# ମିଳନ-ମାଧୁରୀ

## ନାଟକ ।



ପ୍ରକାଶକ
ଶ୍ରୀ ଦାଶରଥି ଦାସ ।

# ମିଳନ-ମାଧୁରୀ

## ନାଟକ ।

---

ଭୃତକାରୀ

ଶ୍ରୀ ବୈଷ୍ଣବ ଚରଣ ଦାସ ବାବାଜିଙ୍କ ବିରଚିତ ।

ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ ।



ପ୍ରଥମ ସଂସ୍କରଣ ।

କଟକ-ଅରୁଣୋଦୟ ପ୍ରେସରେ ମୁଦ୍ରିତ ।

ମୂଲ୍ୟ ୦ ॰ ।୵ ଛଅଣା ମାତ୍ର ।

ମେଳନମାଧୁରୀ ଅଭିନୟର

# ଲୀଳା ବିନୋଦକାରୀମାନଙ୍କ ପରିଚୟ ।

ପୂର୍ଣ୍ଣମାସୀ—ଯୋଗମାୟା ( ଅଘଟନ ଘଟନକାରିଣୀ )

ଶ୍ରୀକୃଷ୍ଣ—ନନ୍ଦନନ୍ଦନ ( ସ୍ୱୟଂ ଗୋଲୋକେଶ୍ୱର )

ସୁବଳ—ଶ୍ରୀକୃଷ୍ଣଙ୍କ ପ୍ରିୟ ନର୍ମ ସଖା ।

ମଧୁମଙ୍ଗଳ—ଶ୍ରୀକୃଷ୍ଣଙ୍କ ଅନ୍ତରଙ୍ଗ ସଖା

ଶ୍ରୀରାଧା—ବୃଷଭାନୁରାଜାଙ୍କ କନ୍ୟା ( ଶ୍ରୀକୃଷ୍ଣଙ୍କ ହ୍ଲାଦିନୀ ଶକ୍ତି )

ଲଳିତା—ଶ୍ରୀରାଧାଙ୍କ ଅନ୍ତରଙ୍ଗା ସଖୀ ୧ ମା

ବିଶାଖା—ଶ୍ରୀରାଧାଙ୍କ ପ୍ରିୟ ନର୍ମ ସଖୀ । ୨ୟା

ଚିତ୍ରା—ଶ୍ରୀରାଧାଙ୍କ ପ୍ରିୟସଖୀ । ୩ୟା

ଚମ୍ପକଲତା—ଶ୍ରୀରାଧାଙ୍କ ପ୍ରିୟସଖୀ । ୪ର୍ଥୀ

ଇନ୍ଦୁରେଖା—ଶ୍ରୀରାଧାଙ୍କ ପ୍ରିୟସଖୀ । ୫ମା

ତୁଙ୍ଗବିଦ୍ୟା—ଶ୍ରୀରାଧାଙ୍କ ପ୍ରିୟସଖୀ । ୬ଷ୍ଠୀ

ସୁଦେବୀ—ଶ୍ରୀରାଧାଙ୍କ ପ୍ରିୟସଖୀ । ୭ମା

ରଙ୍ଗଦେବୀ—ଶ୍ରୀରାଧାଙ୍କ ପ୍ରିୟସଖୀ । ୮ମା

ବୃନ୍ଦା—ଶ୍ରୀରାଧା କୃଷ୍ଣଙ୍କ ଦୂତୀ ।

କୁନ୍ଦଲତା—ଶ୍ରୀକୃଷ୍ଣଙ୍କ ଭ୍ରାତୃଜାୟା ।

ଲବଙ୍ଗମଞ୍ଜରୀ—ଶ୍ରୀରାଧାଙ୍କ ଉପସଙ୍ଗିନୀ ।

ଅନଙ୍ଗମଞ୍ଜରୀ—ଶ୍ରୀରାଧାଙ୍କ କନିଷ୍ଠା ଭଗିନୀ ।

ତୁଳସୀମଞ୍ଜରୀ—ବୃନ୍ଦାଦେବୀଙ୍କ ପରିଚାରିକା ।

ଲୀଳାନନ୍ଦ—ଶ୍ରୀକୃଷ୍ଣଙ୍କ ହାସ୍ୟକାରିଣୀ ଓ ଶ୍ରୀରାଧାଙ୍କ ପ୍ରିୟସଖୀ ।



# ମିଳନ-ମାଧୁରୀ

# ନାଟକ ।

## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ-ପ୍ରେମସରୋବରତୀର ।

ଭଗବତୀ ପୌର୍ଣ୍ଣମାସୀଙ୍କ ପ୍ରବେଶ ।

ପୌର୍ଣ୍ଣମାସୀ—ଯୁବତୀ ଚକ୍ରେଶ୍ବର ବୃନ୍ଦାବନଚନ୍ଦ୍ର ଆଜି ରାଧାପ୍ରେମରେ ମହାପାଗଳ, ସେ ବନଦେବୀ ବୃନ୍ଦାକୁ ଦୂତୀ କରି ରାଧାନିକଟକୁ ପଠାଇଛନ୍ତି, ରାଧା ତେଣେ ଗତରାତ୍ରିର ସ୍ୱପ୍ନ ପ୍ରସଙ୍ଗ ଚନ୍ଦ୍ରାକର କଳାକାନ୍ତିଙ୍କୁ ଝୁରି ହେଉଛି, ତା ମନରେ ପୁଣି କଅଣ ଭାବ ହେଉଛି, କାନ୍ଦୁଛି, ଫୁଲ ତୋଳୁଛି; ଜାଣିଲି-ଏହା ଗାଢ଼ ପ୍ରେମର ଲକ୍ଷଣ, ମୁଖରା ବୁଢ଼ିଠାରୁ ରାଧାର ଅବସ୍ଥା ଶୁଣିଲା ବେଳୁଁ କଳ୍ପିତ ଭାବନାଶୀଳା ଥିଲି; ଏବେ ସେ ଭ୍ରମ ଦୂର ହେଲା, ମୁଁ ତ ଯୁଗଳ ମିଳନର ମୂଳ କାରଣ, ଚିନ୍ତା କରୁଚ କଅଁ ? ଯାବଟକୁ ଯାଇ ପ୍ରେମମୟୀର ଉତ୍କଣ୍ଠା ବଢ଼ାଇବି । ଆଉ ମଧ୍ୟ ଲଳିତା, ବିଶାଖା, ଚିତ୍ରା, ଚମ୍ପକଲତା, ରଙ୍ଗଦେବୀ, ସୁଦେବୀ, ଇନ୍ଦୁରେଖା, ତୁଙ୍ଗବିଦ୍ୟା, କୁନ୍ଦଲତା ଓ ଅନଙ୍ଗମଞ୍ଜରୀ ପ୍ରଭୃତି ସଖୀମାନଙ୍କ ସଙ୍ଗେ ରାଧା ଯେପରି କୃଷ୍ଣାଭିସାରିଣୀ ହେବ ତାହାର ଚେଷ୍ଟା କରିବି । ଯାଏଁ (ପ୍ରସ୍ଥାନ)

ସୁବଳ ଓ ମଧୁମଙ୍ଗଳଙ୍କ ପ୍ରବେଶ ।

ସୁବଳ—( ଶ୍ରୀକୃଷ୍ଣଙ୍କୁ ଅନ୍ବେଷଣ କରି ) କାହ୍ନୁ ଭାଇ ହୋ ! କାହିଁ

ଭାଇ ! କେଉଁଠି ଅଛ କହ୍ନା ! କେତେବେଳୁତ ଆମମାନଙ୍କ ସଙ୍ଗଛାଡ଼ି ଚାଲି ଆସିଛ, କୁଆଡ଼େ ଅଛ ଭଲ ଦେଖା ଦିଅ !

ମଧୁ—ସୁବଳ ! ଆଉ ଏତେ ଖୋଜିପାରିବା ନାହିଁ, ଆସ ଆସ ଲେଉଟି ଯିବା, ସେ ରାଧାପ୍ରେମପାଗଳାଟାତ ରାଧା ରାଧା ହୋଇ କେଉଁଠି ଜ୍ଞାନ ହରେଇ ପଡ଼ିଯିବଣି, ତା'ର କଣ ଖୋଜଖବର ମିଳିବ ? ଆସ ଯମୁନାକୂଳକୁ ଯାଇ ଗାଈ-ମାନଙ୍କୁ ପାଣି ପିଆଇବା । କାହ୍ନୁ କାହ୍ନୁ ହୋଇ ଆଉ ଜଳବଳ ହେବା ଆବଶ୍ୟକ ନାହିଁ ।

ସୁବଳ—ଭାଇ ମଧୁ ! ତୁମ୍ଭେ ସିନା କଠିନ ହୃଦୟ, ମୁଁ ତ କୃଷ୍ଣଙ୍କୁ ନ ଦେଖିଲେ ପ୍ରାଣଧରି ରହିପାରିବି ନାହିଁ ! ଚାଲ ଏ ବନ-ଯାକ ବୁଲି ବୁଲି ଖୋଜିବା, ନଇଲେ ତୁମ୍ଭେ ଗଲେ ଯାଅ ପଛକେ ମୁଁ ଏକା ଏକା କାହ୍ନୁଭାଇକି ଖୋଜିବି ।

ନେପଥ୍ୟେ—( ବଂଶୀଧ୍ୱନି )

ମଧୁ—ସୁବଳ ! ଶୁଣ, ଶୁଣ, ସେହି ତମାଳକୁଞ୍ଜଆଡ଼େ କାହ୍ନୁ ବଂଶୀ ବାଉଛି, ଆସ ଆସ ସେଠାକୁ ଯିବା, ଚଞ୍ଚଳ ଆସ ( ପ୍ରସ୍ଥାନ )

ପଟ୍ଟପରିବର୍ତ୍ତନ ।



ଦ୍ୱିତୀୟ ଦୃଶ୍ୟ—ଶ୍ରୀରାଧାଙ୍କ ପୁଷ୍ପବାଟିକା ।

( ସଖିଗଣ ବେଷ୍ଟିତା ଶ୍ରୀରାଧା ବସି ଫୁଲଗୁନ୍ଥୁଥିବା )

ଶ୍ରୀରାଧା—( ଫୁଲ ଗୁନ୍ଥୁ ଗୁନ୍ଥୁ ) ସଖି ଲଳିତେ ! ଆଜି ମୁଁ ଗୋଟିଏ ସ୍ୱପ୍ନ ଦେଖିଛି, ତାହା କହିବି ଶୁଣିବ ?

ଲଳିତା—କହୁନାଅଁ କି ସ୍ୱପ୍ନ ଦେଖିଛ ରାଧେ !

ଶ୍ରୀରାଧା—ସଖି ! ମୁଁ ଏଇ ସ୍ୱପ୍ନ ଦେଖିଲି ଯେ, ନାଚୁଥି ନୀଳମଣିଙ୍କ ତୁଲେ ଆମେମାନେ ସମସ୍ତେ ଫଗୁଖେଳୁଚେଁ । ଆଉ ସୁବା-ସିତ ଲାଲ ଜଳରେ ପିଚକାରୀ ମରାମରି ହେଉଚେଁ, ପୁଣି

ଫୁଲହାରରେ ତାଙ୍କୁ ମଣ୍ଡିଣି କରି ହୁଳହୁଳି ଦେଉଥିଲେଁ, ଏହି ସମୟରେ ମୋ ନିଦ ଭାଙ୍ଗିଗଲା । ଅହା ! କି ସୁନ୍ଦର ସ୍ୱପ୍ନଟିଏ ଦେଖିଥିଲି ? ସଖି ! ଏ ସ୍ୱପ୍ନଟି ଭଲ କି ମନ୍ଦ କହିଲ ?

ବିଶାଖା—ହଉ ଗୋ ! ହୃଦୟନାଥ ଶ୍ୟାମସୁନ୍ଦରଙ୍କୁ ଯେତେବେଳେ ସ୍ୱପ୍ନ ଦେଖିଛ, ସ୍ୱପ୍ନ ମନ୍ଦ ହେବ କାହିଁକି ? ଏ ଶୁଭ ସ୍ୱପ୍ନ ।

ଲଳିତା—ରାଧେ ! ମୁଁ ଜାଣି ପାରୁଛି ଆଜି ବନମାଳୀଙ୍କ ସଙ୍ଗେ ଶୁଭ-ମିଳନ ହେବ, ଆଜି ବାଧାବିଘ୍ନ କିଛି ଘଟିବ ନାହିଁ ।

ଶ୍ରୀରାଧା—ତେବେ ଚମ୍ପକ ଫୁଲ ଗୁନ୍ଥା ସାରି, ତାଙ୍କ ଦର୍ଶନକୁ ଯିବା ।

ବିଶାଖା—ଏଥିରେ ଆଉ ହେଳା ଅଛି ସଖି ! ଅମେମାନେ ସବୁ-ଜାଣି ଜାଣି ଆଜି ବହୁତ ଗୁଡ଼ିଏ ଫୁଲ ତୋଳିଛୁ ।

ନେପଥ୍ୟେ—( ବୃନ୍ଦାଙ୍କ ନୂପୁର ଧ୍ୱନି )

ଶ୍ରୀରାଧା—(ସେହି ଆଡ଼କୁ କର୍ଣ୍ଣଦେଇ) ସଖି ! ରହ ରହ, କିଏ ଆସୁଛି

ଲଳିତା—( ତେଣେ ଚାହିଁ ) ଧନି ! ସୁଯୋଗକୁ ବୃନ୍ଦା ଆସିଲେଣି ।

ବୃନ୍ଦାଙ୍କର ପ୍ରବେଶ ।

ଶ୍ରୀରାଧା—ବୃନ୍ଦେ ! କେଉଁଠାରୁ ଆସିଲ ?

ବୃନ୍ଦା—ତମାଳ ନିକୁଞ୍ଜ ଠାରୁ

ଶ୍ରୀରାଧା—ସଖି ! ଆଜି କୃଷ୍ଣଙ୍କ ସହିତ ତମର ଦେଖା ହୋଇଛି ତ ?

ବୃନ୍ଦା—ହଁ ଦେଖା ହୋଇଛି, ମୁଁ ପରା ତାଙ୍କର ଲାଗି ତମ ନିକଟକୁ ଆସିଛି ।

ଶ୍ରୀରାଧା—ତାଙ୍କର ଲାଗି ? ଅହା ! ବୃନ୍ଦେ ଗୋ ! ଏ ହତଭାଗିନୀ କୁରୂପିଣୀ ପାମାପାମା ପାଖକୁ ତମକୁ ସେ ପଠେଇଛନ୍ତି ? ସଖି ! ତାଙ୍କ ମନରେ ସତେ ଏ କଙ୍କସା କଥା ଭାବୁଛନ୍ତି ?

ବୃନ୍ଦା—ଭାବୁଛନ୍ତି ରାଧେ ଗୋ ! ତା' କଅଣ କହୁଛ, ସେ ତମରି ଯିବା ପଥକୁ ଚାହିଁ ଚାହିଁ ଘନକୁ ଚାତକ ଭଳି ହେଲେଣି ।

ଗୀତ ।

ଅଗୋ ଭାବମୟି ! ଅଗୋ ଭାବମୟି ! ଶୁଣ ଶୁଣ ଭାନୁ ଜେମା-ଦେଇ । ଘନକୁ ଚାତକ ଭଳି ଘନଶ୍ୟାମ ତୋ ଯିବା ପଥକୁ ଚାହିଁ ଚାହିଁ । ପଦ । ସେବତୀ ଫୁଲକୁ ଅଳି ଚୁମ୍ବିବାର ଦେଖି ସେ ମୋହନ ବନମାଳୀ । କଷ୍ଟ ମନେ ଭାଳି ନେଇ ନୀର ଢ଼ାଳି ବସିଛନ୍ତି ଦୁଃଖେ ପ୍ରିୟ ଅଳୀ ॥ ଅଗୋ ଭାବମୟି ! ଅଗୋ ଭାବମୟି ! ତୋ ହୃଦ ରତନ ସେ ମାଧୋଇ । ଧାଉଛନ୍ତି ତୋର ଗୁଣ ଗାଉଛନ୍ତି ମୋହନ-ବଂଶୀ ଅଧରେ ଦେଇ । ୧ । ( ବ୍ରଜବାସୀ )

ଶ୍ରୀରାଧା—ସଖି ! ନୀଳମଣିଙ୍କର ଅଛି ସବୁ କୁଶଳ ତ ?

ବୃନ୍ଦା—ରାଧେ ! ତାଙ୍କ କୁଶଳ କଥା କହୁଚି ଶୁଣ ।—

ସେ ତମର ରୂପ ଗୁଣକୁ ଝୁରି ଝୁରି ଝାଉଁଳିଲା ନବୀନ-ତମାଳ ପରି ତେଜହୀନ ହୋଇ ଗଲେଣି, ମୁଗ୍‌ଧେ ! ତମ ଅଭିସାର ନିମନ୍ତେ ମତେ ସେ କେତେ ରୂପେ ପ୍ରାର୍ଥନା କରି ପଠେଇଛନ୍ତି, ତେବେମେ ସୁସମୟରେ ଅଭିସାର କରି ତାଙ୍କ ଦୁଃଖ ଯାତନା ହରଣ କର, ଦେଖ ରାଧେ ! ଅଜ ବାସନ୍ତୀ ପୂର୍ଣ୍ଣିମୀରେ ମନ୍ଦ ମନ୍ଦ ହୋଇ ଦକ୍ଷିଣ ଦିଗରୁ କପରି ମଳୟ ପବନ ବହୁଚି, ଅଭ ମନୋହର ପୁଷ୍ପ ଗନ୍ଧରେ ଚତୁର୍ଦ୍ଦିଗ ଆମୋଦିତ ହେଉଚି; କୋଇଲି ସ୍ୱନ କି ସୁନ୍ଦର କୁହୁ କୁହୁ ନାଦରେ ହୃଦୟକୁ ପୁଲକିତ କରେଇ ଦେଉଚି, ପୁଣି ଶୁଣ, ଭ୍ରମରମାନଙ୍କ ଝଙ୍କାର ନିନାଦ ମଙ୍ଗଳ ଶଙ୍ଖପରି ସରବେ ହେଉଚି, ପ୍ରେମ-ମୟି ! ଅଜ ଶୁଭମୁହୂର୍ତ୍ତରେ ନିକୁଞ୍ଜବିହାରୀଙ୍କ ନିକଟକୁ ଅଭିସାରିଣୀ ହୁଅ ।

ଗୀତ ।

କୁଞ୍ଜେ ବିଜୟେ ଗୋ କର କୁଞ୍ଜରଗାମିନୀ । ବାଜୁ କଣି କଣି କଣ୍ଠ ରତନ କିଙ୍କିଣୀ । ଘୋଷା । ଭୃଙ୍ଗ ବିଦ୍ୟା ତମ୍ଭବାଜା ସଧୀରେ

ବଜାଉ ଗୋ । ରଙ୍ଗେ ନାଚୁ ରଙ୍ଗଦେବୀ ସୁଦେବୀକା ଗାଉ । ୧ ।
ନାନା ନୃତ୍ୟ ଗୀତ ରସ ବିଳାସ ପ୍ରକଟ ଗୋ । ତନ, ଘନ, ଧିଗ୍
ଧିଗାନ୍ତର ପୂରି ଉଠୁ । ୨ । ଗୋରୀ ଚନ୍ଦ୍ରମୁଖୀ ରାଧେ ଯଶୋଦାନନ୍ଦନ ସ୍ମୃତି
ଗୋ । କନ୍ଦର୍ପ ମୋହିନୀ ରମ୍ଭା ଜିଣି ନଟମୂର୍ତ୍ତି । ୩ । ରାଧେ ରସବତୀ
ପ୍ରେମାମୃତ ଉଦ୍‌ଗାରିଣୀ ଗୋ । ତଜେକର ବୃନ୍ଦାବନେ ଏ ବୃନ୍ଦାବାଣୀ,
ଘେନ । ୪ । (ଓଷ୍ଠାଚନ୍ଦନ)

ଲଳିତା—ବୃନ୍ଦେ ! କୁଞ୍ଜକୁ ତ ଅଭିସାର କରିବାକୁ କହୁଚ, ଅଭି
ଠିକ ଚନ୍ଦ୍ରାମଣିଙ୍କ ଠକାଇ ପାଲରେ ଆମ ରାଧା ପଡ଼ିଯିବେ
ନାହିଁ ତ ? ସେ ଯେ ଶଠମାନଙ୍କର ଗୁରୁ ।

ବୃନ୍ଦା—ସଖି ! ଶଠଙ୍କ ଗୁରୁବୋଲି ଯାହା କହିଲ ତା ସତ, କିନ୍ତୁ
ଆଜି ସେ ଭିବ ଘଟିବା ଅସମ୍ଭବ, କାରଣ, ଦେବୀ ପୌର୍ଣ୍ଣମାସୀ
ମୋତେ ଏକଥା ଭଲରୂପେ ବୁଝେଇ ଦେଇଛନ୍ତି, ଆଜି
ରାଧା ମାଧବଙ୍କର ନିମେଷେ ମାତ୍ର ବିଚ୍ଛେଦ ଘଟିବ ନାହିଁ,
ତେମେ ମୋ କଥାକୁ ବିଶ୍ୱାସ କର ।

ଲଳିତା—ବନଦେବି ! ତୁମ କଥାକୁ କିଏ କେବେ ଅବିଶ୍ୱାସ କରି
ଥାଏ କି ? ଯଦି ଆଜି ଶୁଭମିଳନରେ ବାଧା ବିଘ୍ନ କିଛି ନ
ଘଟିବ, ତେବେ କାତ୍ୟାୟନୀ ମହାମାୟୀଙ୍କ ନିକଟରେ କାଲି
ଖୁବ୍ ଭୋଗରାଗ କରିବା । ଏବେ ଅଭିସାର ବିଧାନର
ଦ୍ରବ୍ୟଗୁଡ଼ିକ ସଜାଡ଼ିବା ଆସ ।

ବିଶାଖା—ଚାଲ ଗୋ, ଶୁଭକାର୍ଯ୍ୟରେ ହେଳା କରିବା ଅବଶ୍ୟକ ନାହିଁ;
ଚାଲ; ଚାଲ, ଶୀଘ୍ର ଚାଲ ।

(ସମସ୍ତଙ୍କର ପ୍ରସ୍ଥାନ)

—)(※)(—

## ତୃତୀୟ ଦୃଶ୍ୟ—ତମାଳକୁଞ୍ଜ ।

( ଶ୍ରୀକୃଷ୍ଣ ବଂଶୀ ଧରି ରାଧାନାମ ଗାନକରୁଥିବା )

ଗୀତ ।

ରାଧା ନାମାମୃତ କର ପାନ ରେ, ଭୃଙ୍ଗମନ !
ରାଧାନାମ ଗାନେ ଲଗା ଧ୍ୟାନ ରେ, ଭୃଙ୍ଗମନ ! । ଘୋଷା ।
ରାଧା ରୂପର ମାଧୁରୀ, ସେତ ଅପରୂପ ଶିରୀ,
ନାହିଁ ନାହିଁ ଏ ତିନ ଭୁବନରେ । ୧ ।
ରାଧା ମୋ ଜୀବ ଜୀବନ, ରାଧା ମୋ ସର୍ବସ୍ୱ ଧନ,
ରାଧା ମୋ ଭଜନ ପୂଜନ ରେ । ୨ ।
ରାଧା ଶୟନେ ସ୍ୱପନେ, ରାଧା ଭବନେ ବିପିନେ,
ରାଧାମୟ ଦେଖେ ମୋ ନୟନ ରେ । ୩ ।

( ଧୂବଳ, ମଧୁମଙ୍ଗଳଙ୍କ ପ୍ରବେଶ । )

ମଧୁ—ଦେଖ ହେ-ଦେଖ ! ନାଗରମନଚୋର ତ ଏଇଠି । ଆମ୍ଭେ ବନଯାକ ଖୋଜି ଖୋଜି ଏତେ ହଇରାଣ ହେଉଛୁଁ, ସେ କେଉଁଠି ପାଇବା ? ( ଶ୍ରୀକୃଷ୍ଣଙ୍କୁ ) ହଇ ହେ ଶଠଶିରୋମଣି ! ଏଠି ଏକା ଏକା ବସି କଣ ଗୁଣୁଗୁଣୁ ହେଉଛ ? କେଉଁ ମନ୍ତ୍ର ତୁମ୍ଭ ଚିତ୍ତ ଭିତରେ ଲାଗିରହିଛି କି ? କଅଣତ ରା ରା ରା ରା ଖାଲି ଜପିଲାଣିଛ, ହୁଁ—ଜଣାଗଲା, ଜଣାଗଲା ।

[ କରତାଳି ]

ଶ୍ରୀକୃଷ୍ଣ—ବନ୍ଧୁ ! ତୁମ୍ଭେ ଏ ଥଟା କଅଣ ଛାଡ଼ିବ ନାହିଁ ? ମୋର ଦୁଃଖବେଳେ ମଧ୍ୟ କରତାଳି ମାରି ଆନନ୍ଦ ହେଉଛ ?

ମଧୁ—ତୁମ୍ଭର ପୁଣି ଦୁଃଖଟା ଏ କାହୁଁ ଆସିଲା ? ତୁମ୍ଭେ ପରା ସଚ୍ଚିଦାନନ୍ଦମୟ ?

ଶ୍ରୀକୃଷ୍ଣ—ତା ସତ, କିନ୍ତୁ ରାଧାରୂପ ଅଦର୍ଶନରୁ ଘୋର ଦୁଃଖରେ ପଡିତ ମୁହିଁ, ମୋ ଆନନ୍ଦଦାୟିନୀ ବିନା ସବୁ ଅନ୍ଧକାର ଦେଖୁଛି ସଖା !

ମଧୁ—ବୋଧହୁଏ ରାଧା ତମ ଆଖିରେ ଅନ୍ଧପଟ୍ଟି ବାନ୍ଧଦେଇଛି ।
ସେଇଥି ଲାଗି ଆଖି ଥାଉଁ ଥାଉଁ ଅନ୍ଧ ହୋଇ ଯାଉଛଣି ।

ବଳ—ବନ୍ଧୁ ! ପୁଣି ସେଇ ଥଟ୍ଟା କରିବାରେ ଅଛ ?
( ଶ୍ରୀକୃଷ୍ଣଙ୍କ ପ୍ରତି ) ସଖେ ! ଆସ ଆସ ରାଧାଙ୍କ ଅଭିସାର ପାଇଁ ପ୍ରତିକାର କରିବା ।

ଶ୍ରୀକୃଷ୍ଣ—ସୁବଳ ! ମୁଁ ଏଥି ପୂର୍ବରୁ ବୃନ୍ଦାକୁ ପଠାଇଛି; ସେ ତାହାର ପ୍ରତିକାର କରିବ ।

ସୁବଳ—ତେବେ ଚିନ୍ତାକରିବା କି ଆବଶ୍ୟକ ?

ମଧୁ—ହା ! ହା ! ହା ! ଏ ଚନ୍ଦ୍ରାମଣିଙ୍କ ଚିନ୍ତାକଥା ପୁଣି ପଶ୍ଚରୁଛ, କହେ, ଏତେବେଳେ ତାଙ୍କୁ ଯେଉଁ ରୋଗ ଧରିଛି, ସେ ରୋଗ ତ ଅଟଳ ରୋଗ । ଦେଖୁ ନାହିଁ ( ଗୁପ୍ତରେ ହାତ-ମାରି ) ଓଃ ଏ ତାତି କଅଣ କମ୍ ତାତି ? ବାପରେ, ବାପ; ଏ ଭଳିଆ ଅଚଲ୍ଲା ବ୍ୟାଧିକି ଔଷଧି ଏକା ସେହି ରସନିଧି, ରସନିଧି ତା ଛଡ଼ା କାହିଁରେ ହେଲେ ଏ ଜ୍ୱର ଭଲ ହେବ ନାହିଁ । ସଖା ଆମ୍ଭର ବଡ଼ ହଇରାଣରେ ପଡ଼ିଗଲେ, ପଡ଼ିଗଲେ । ଯାହା ହେଉ ସୁବଳ ! ଏ ଜ୍ୱର ଛାଡ଼ିବା ଭଳି ଉପଚାର ନ କଲେ ଆଉ ଗତି ନାହିଁ । ( ଶ୍ରୀକୃଷ୍ଣଙ୍କ ପ୍ରତି ) ସଖା ! ଉଠ, ଉଠ, ଚଞ୍ଚଳ ଗୋଧନ ବାହୁଡ଼ା କାର୍ଯ୍ୟଟା ସାରି ଦେଇ ସଙ୍କେତ କରିଥିବା କୁଞ୍ଜରେ ହାଜର ହେବା ଚେଷ୍ଟାକର ।

ସୁବଳ—ଆସ ପ୍ରିୟସଖା ! ତେଣେ ଅନ୍ୟ ସଖାମାନେ ଆମ୍ଭଙ୍କୁ ଖୋଜୁଥିବେ, ଏଣେ ବେଳ ଅବସାନ ହୋଇ ଆସିଲାଣି, ଗାଈ-ମାନଙ୍କୁ ନେଇ ଘରକୁ ଯିବା ଆସ । (ଶ୍ରୀକୃଷ୍ଣଙ୍କୁ କୋଳକଲେ)

ଶ୍ରୀକୃଷ୍ଣ—( ଦୁଇସଖାଙ୍କ କାନରେ କରଭାର ଦେଇ ପ୍ରସ୍ଥାନ )

ପଞ୍ଚ ପରିବର୍ତ୍ତନ ।



## ଚତୁର୍ଥ ଦୃଶ୍ୟ । କୁସୁମିତ ବୃନ୍ଦାବନ ।

[ ପ୍ରସନ୍ନମନେ ପୌର୍ଣ୍ଣମାସୀଙ୍କ ପ୍ରବେଶ । ]

### ଗୀତ ।

ଧନ୍ୟ ଧନ୍ୟ ଧନ୍ୟ ଏ ମଧୁର ବୃନ୍ଦାବନ ।
ଧନ୍ୟ ଧନ୍ୟ ଧନ୍ୟ ତୁମ୍ଭେ ତରୁ ଲତାଗଣ ॥
ଆଜ ଚୈତ୍ର ଶୁକ୍ଳପକ୍ଷ ବାସନ୍ତ ପୂର୍ଣ୍ଣିମା ।
ଯୁଗଳ ମିଳନ ହେବେ କାହ୍ନୁ ଭାନୁଜେମା ॥
ଫୁଲ ଶେଯେ ବିଳସିବେ କିଶୋର କିଶୋରୀ ।
ଧନ୍ୟ ହେବ ଦେଖି ନେତ୍ରେ ମିଳନ ମାଧୁରୀ ॥
ଚନ୍ଦ୍ରା ଚମ୍ପକ ଲତିକା ବିଶାଖା ଲଳିତା ।
ସେବାରେ ଥିବେ ସୁଚନ୍ଦ୍ରା ବୃନ୍ଦା କୁନ୍ଦଲତା ॥
ଇନ୍ଦୁରେଖା ରଙ୍ଗଦେବୀ ସୁଦେବୀ ସହିତେ ।
ତୁଙ୍ଗବିଦ୍ୟା ଆଦି ସର୍ବେ ଥିବେ ନୃତ୍ୟ ଗୀତେ ॥
ଶୁକ ସାରୀ ହଳଦୀ ବସନ୍ତ କେକୀ ପିକ ।
ସୁମଧୁର ସ୍ୱନେ ଦେଉଥିବେ ଜୟ ଡାକ ॥
ମଧୁର ଗୁଞ୍ଜନେ ମଧୁକର ପନ୍ତ ପନ୍ତ ।
ଫୁଲେ ଫୁଲେ ମଧୁ ଚୁମୁଥିବେ ପ୍ରେମେ ମାତ ॥
ବହୁଥିବ ଧୀରେ ମୃଦୁ ମଳୟ ପବନ ।
ବାସନ୍ତୀକ ସୌଷ୍ଠବେ ମୁଗ୍ଧ ହେବ ମନ ॥
ହେବ ଦାସୀ ମାନଙ୍କର ପୁଷ୍ପ ବୃଷ୍ଟି ହେବ ।
ବୃନ୍ଦାବନ ରାସସ୍ଥଳ ଉଚ୍ଛୁଳ ପଡ଼ିବ ॥
ନୃତ୍ୟ ନାୟିକାମାନଙ୍କ ସଙ୍ଗେ ନଟେଶ୍ୱର ।
ମଜ୍ଜିବେ ନୃତ୍ୟ ଲୀଳାରେ ନିଶି ହେବ ଭୋର ॥
ହାଇଁ ଅପିଲାଣି ଶୁଭେ ପୁନଅର ଜନ୍ମ ।
ଅହା କି ସୁନ୍ଦର ତାର ରଜତ କିରଣ ॥

ଏବେଣ ଶୁଭଲାଣି ଶୁଭ ହୁଳହୁଳି ଧ୍ୱନି ।
ଏହିକ୍ଷଣି କୁଞ୍ଜେ ବିଜେ ହେବେ ରାଧାରାଣୀ ॥
( ଯୋଗମାୟା ଗାନ ସ୍ୱନ୍ତ ଧୀରେ ଧୀରେ ହସି ହସି ପ୍ରସ୍ଥାନକାଳେ ପରଦା ପତନ । )



# ଦ୍ୱିତୀୟ ଅଙ୍କ ।

## ପ୍ରଥମ ଦୃଶ୍ୟ । କୁସୁମିତ ବନପଥ ।

ଶ୍ରୀରାଧାଙ୍କୁ ଘେନି ସଖୀଗଣ ଆନନ୍ଦମନେ ଗାନ ସହ ପ୍ରବେଶ ।

### ଗୀତ ।

ଚଳ ଚଳ ଚଳ କୁଞ୍ଜେ କୁଞ୍ଜରଗାମିନୀ ।
ଯହିଁ ବସିଥିବେ ଚିତ୍ତଚୋର ନୀଳମଣି । ଘୋଷା ।
ବାଜୁ ରଣି ଝଣି କଟି କିଙ୍କିଣୀ ଲଳିତେ ।
ଧର ଗୋ ତାମ୍ବୁଳ ବଟା ସଙ୍ଗିନୀ ଲଳିତେ । ୧ ।
କର୍ପୂର ଗନ୍ଧ ଚନ୍ଦନ ଧର ଗୋ ବିଶାଖେ ।
ଚାଳ ଗୋ କୃଷ୍ଣ ଚାମର ଚମ୍ପକ ଲତିକେ । ୨ ।
ନୀଳ ପୀତ ବାସ ଧର ଚିତ୍ରା ବିଚକ୍ଷଣା ।
ବଜାଅ ଗୋ ତୁଙ୍ଗବିଦ୍ୟା ମୃଦୁ ମୃଦୁ ବୀଣା । ୩ ।
ଆରମ୍ଭ ଗୋ ନୃତ୍ୟ ଗୀତ ଅଗୋ ଇନ୍ଦୁରେଖା ।
ସୁବାସିତ ଜଳ ଝରି ଧର ସୁଦେବିକା । ୪ ।
ରାଗ ରାଗିଣୀ ଉଚ୍ଚାର ଅଗୋ ରଙ୍ଗଦେବୀ ।
ମିଳନ ହୋଇବେ କୁଞ୍ଜେ ବଲ୍ଲଭ ବଲ୍ଲଭୀ । ୫ ।
ଅଗୋ ବୃନ୍ଦେ ପ୍ରେମାନନ୍ଦେ ଦିଅ ଜୟଧ୍ୱନି ।
ଜୟ ଶ୍ରୀ ରାଧିକେ ଜୟ ରାଈ ବିନୋଦିନୀ । ୬ ।
ଧର ଗୋ ତୁଳସୀ ଜୟ ଶଙ୍ଖ ଭେରି ତୁରୀ ।
ପହଣ୍ଡ ମଣାଅ ଧୀରେ ଅନଙ୍ଗ ମଞ୍ଜରୀ । ୭ ।

ଅଗୋ ସଙ୍ଗିନୀଏ ସବେ ଦଅ ହୁଳହୁଳ ।
ମହୋତ୍ସବେ ବୃନ୍ଦାବନ ପଡ଼ୁ ଗୋ ଦହଲ ।୮।
ମଞ୍ଜରୀଏ ଧର ଛନ୍ଦ ତସର ଅଢ଼େଣୀ ।
କୁଞ୍ଜ ଅଭିସାରେ ଚଳେ ଆମ୍ଭ ରାଧାରାଣୀ ॥
ମାର ଲବଙ୍ଗ ମଞ୍ଜରୀ ଫଗୁ ପିଚକାରୀ ।
ପିକଦାନୀ ଖଣ୍ଟ ଥାଉ ବିନୋଦ ମଞ୍ଜରୀ ।୧୦।

( ନୃତ୍ୟ ଓ ଗାନ ସହିତ ସଖୀଗଣ ଆନନ୍ଦ ମନେ ପ୍ରସ୍ଥାନ )

ପଟ୍ଟପରିବର୍ତ୍ତନ ।



## ଦ୍ୱିତୀୟ ଦୃଶ୍ୟ—ନନ୍ଦୀଶ୍ୱର ।

( ଶ୍ରୀକୃଷ୍ଣ ଛନ ଛନ ମନେ ଅଗ୍ରସର )

ଗୀତ ।

ରସରଙ୍ଗିନୀ ମୋ ପରାଣ ସଙ୍ଗିନୀ
ଆହା ରେ ମାନସ ଉନ୍ମାଦିନୀ ।
ଶରଣ ବତ୍ସଳା, ଗୁରୁ ପ୍ରେମ ଶୀଳା,
ରସରସମୟୀ ବିନୋଦିନୀ ।
ହୃଦ ବିଳାସିନୀ । ନିକୁଞ୍ଜ ରାଣୀ ମୋ ଆହ୍ଲାଦିନୀ ।୧।
ମରାଳଗମନୀ, ହରିଣୀ ନୟନୀ,
କୋକିଳ ବଚନୀ ପୀନସ୍ତନୀ ।
କାଞ୍ଚନ ବରନୀ, ପ୍ରେମଦାୟୀ ଧନୀ,
ସୁଚିକ୍କନ ବସନୀ, ଯୋଷାମଣି ।
ସ୍ଥୂଳ ନିତମ୍ବିନୀ, କୁନ୍ଦଦନ୍ତୀ କର୍ପୂର ହାସିନୀ ।୨।
ଅରେ ଗୁଣମଣି, ତୋର ଗୁଣ ଗୁଣି,
ସରିବ କି ଦିବସ ରଜନୀ ।

ନବ ଯଉବନୀ, ନବାନୁରାଗିଣୀ,
ପ୍ରୀତି ବରଷଣୀ ପଦ୍ମପାଣି ।
ଅଦେ ସୁଲକ୍ଷଣୀ, ମାଳାଳନ୍ଦନୀ ମୋ କୁରୁକଣୀ । ୩ ।



ଶ୍ରୀକୃଷ୍ଣ-(ସ୍ୱଗତ) ଅହା ! ପ୍ରେମମୟି ଗୋ ! ସତେ ଅଜ ତମାଳକୁଞ୍ଜକୁ ଅଭିସାରଣୀ ହୋଇ ମୋ ହୃଦୟ ତାପ ବିନାଶ କରିବୁ ? ଯେଉଁଥିଲି ଇତିପୂର୍ବେ ବୃନ୍ଦାକୁ ତୋ ପାଶେ, କହିଥିବଟି ସକଳ ସମାଚାର ଧନ ! ମୋ ଦୁଃଖ କାହାଣୀ ଶୁଣି ସେ ଦୂତିକା ମୁଖୁଁ, ବାଧିଥିବ ପରା ତୋତେ କଷ୍ଟେ ଅବଶ୍ୟ ? ଜାଣେ ମୁହିଁ ଅଟୁ ତୁ ଗୋ କୃଷ୍ଣଗତ ପ୍ରାଣା, ହା କୃଷ୍ଣ ବୋଲି ଦିବସ ରଜନୀ, ଚିନ୍ତା କରୁଥାଉ ପରା ଦର୍ଶନ ଲାଳସେ । ଅସମୟେ ଦେଖା ଯେଣୁ ନ ପାଉ ମୋହର, କେତେ ସନ୍ତାପ କରୁ ତୁ ଏକାନ୍ତରେ ବସି । ଅଜ ସେହି ଦୁଃଖରାଶି ଯାଉଥିବ ବଳି, ଦେଖିବା ଯାଏ ତୁ ମୋତେ ଅଦେ ସ୍ୱରୁଶୀଳା ! ଅଶନ ବସନ ଲାଗୁଥିବ ବିଷପରି, ସଖୀମାନେ ବେଢିଥିବ ବଢ଼ାଇବା କାଳେ, କହୁଥିବୁ ପରା ତାଙ୍କୁ ମନୋଗତ ଭାବ ! ଅବ୍ୟକ୍ତ ମଧୁର ପ୍ରେମ ତୋର ମୋର ଯେଣୁ, ନିମିଷେ ଅନ୍ତର ହେଲେ ଲାଗେ ଯୁଗ ସମ, ହା ପ୍ରାଣାଧିକେ ରାଧିକେ ଅସୁଥିବୁ ପରା, ନିକୁଞ୍ଜକୁ ଯୁଲଳିତ ମନ୍ଥରଗମନେ, ସଖିଗଣ ମଧେ ଯଥା ତାରା ମଧେ ଶଶୀ, ସେହିପରି ଦିଶୁଥିବୁ ପରାଣ ପିତୁଳି; ଯିବ ଏବେ ସଙ୍କେତକୁ ତୋ ଦର୍ଶନ ଅଚିର; ଏହି ଶୁଭ ମୂହୂର୍ତ୍ତିରେ ଅଦେ ଜବାଧରି ! ଯୋଗମାୟା ସୁପ୍ରସନ୍ନେ ବାଧା ବିଘ୍ନ ଯେତେ, ସେ ସମସ୍ତ ହେବ ଦୂର ଅଜରେ ନିଶ୍ଚୟ ! ମଧୁମୟ ମଧୁକାଳ ରଜନୀ ପୂର୍ଣ୍ଣିମା; ଅହା ! କି ସୁଷମା ଯୋଗ ମାହେନ୍ଦ୍ର ଅମୃତେ ।

ନେପଥ୍ୟରୁ—( ତୁଳସୀ ମଞ୍ଜରୀଙ୍କ ପ୍ରବେଶ ଓ ପ୍ରଣାମ )
ଶ୍ରୀକୃଷ୍ଣ—( ମନ୍ଦେ ହସି ) କ ଗୋ ତୁଳସି ! ଖବର କଅଣ ?
ତୁଳସୀ—ସମସ୍ତ କୁଶଳ, ବନଦେବୀ କହୁଛନ୍ତି—କୁଞ୍ଜକୁ ବଜେ କରନ୍ତୁ । ଦାସୀ ମେଲାଣି ନେଉଛି ।

[ ଏହା କହି ପ୍ରସ୍ଥାନ ]

ଶ୍ରୀକୃଷ୍ଣ—ଆଉ ବିଳମ୍ବରେ ପ୍ରୟୋଜନ ନାହିଁ ।
ସଙ୍କେତ କୁଞ୍ଜକୁ ଯିବ । [ ପ୍ରସ୍ଥାନ ]

ପଟ୍ଟ ପରିବର୍ତ୍ତନ ।



ତୃତୀୟ ଦୃଶ୍ୟ । ବୃନ୍ଦାବନର ଏକ ପ୍ରଦେଶ ।

( ସଖୀଗଣ ବେଷ୍ଟିତା ଶ୍ରୀ ରାଧାଙ୍କ ପ୍ରବେଶ । )

ଲଳିତା—ରାଧିକେ ! ଦେଖ କି ସୁନ୍ଦର ଶୋଭା ପାଉଛି ।
ବିଶାଖା—ଧନ ! ଆଜ ତୁମ୍ଭ ପାଖରେ କି ଶୋଭା
ନ ବସିବେ ମାଳଦାଗିଛି ?
ବୃନ୍ଦା—ମିଳସଲେ ଦ୍ୱିଜା ହୁଇ ରହୁଛି ?
କୁନ୍ଦଲତା—ପ୍ରେମରସ ଖେଳେ ଦୁହେଁ ଗଲେ ମାତିଛି ?
ଲୀଳାନିଧି—ନୋହିଲେ କପର ଖସିବ ଅଙ୍ଗ ତାତିଛି ?
ଚନ୍ଦ୍ରା—ଅଗୋ ! ଏଇତପାଇଁ ପର ଗଲା ଆମ୍ଭ ଜାଣିଛି ?
ଚମ୍ପକଲତା—ଖାଲି ଏତିକ ? କେତେ ବସିଗଲା ଅପଖ୍ୟାତିଛି ?
ଇନ୍ଦୁରେଖା—ବନ୍ଧୁସୀଏ ହୋଇବାରୁ ସାଧୁଛି ?
ଶ୍ରୀରାଧା—ସଖିଏ ଗୋ ! ଯାହା ଇଚ୍ଛା ତାହା ହୋଉ
ମୋର ସକଳ ସମ୍ପତ୍ତି ନୀଳ ମୂର୍ତ୍ତିଟି
ଲଳିତା—ହିଁ ଗୋ ରାଧେ ! ଆମେମାନେ ଯେପରି ସଦା ଦେଖୁଥାଉଁ
କାଳା ଶୋଭା ଭଜୁଛି ?

ଭୃଙ୍ଗବିଦ୍ୟା—କଥା କହୁଁ ୨ ଗୁଡ଼ିଏ ପଦଟି ବଖାଣି ଗଲ ହେ ସଖି !

ଲଳିତା—ଭୃଙ୍ଗବିଦ୍ୟେ ! ତୁମେ ଯେ ଆମମାନଙ୍କ ସଙ୍ଗରେ ପଦେ
ଅଧେ ପଦଟି ନ ଯୋଡ଼ି ନୀରବ ହେଲ ?

ବିଶାଖା—ଅଗୋ, ସେ ପଦଟି କଅଣ କହିବେ ?
ଆମ ଜେମାମଣିଙ୍କି ଗୋଟିଏ ଗାନ ଶୁଣାନ୍ତୁ ।

ଚିତ୍ରା—ସତ କହିଲ ବିଶାଖେ ! ଭୃଙ୍ଗବିଦ୍ୟା ତ ଆମମାନଙ୍କ ମଧ୍ୟରେ
ଗାୟିକା ଶିରୋମଣି, ଗାଆନ୍ତୁ ଗାଆନ୍ତୁ, ଆମ ରାଧାଙ୍କ ମନ
ମାନିଲା ଭଳି ଗୋଟିଏ ମଧୁର ସଙ୍ଗୀତ ଗାଆନ୍ତୁ ।

ଚମ୍ପକଲତା—ଧର ଗୋ ବୀଣା, ଗାନପ୍ରବୀଣା,
ଭୃଙ୍ଗବିଦ୍ୟା ସଖି ! ଧିନକ ଧିନା ।

ବିଶାଖା—[ ହସି ହସି ] ବେଶ୍ ବେଶ୍ ଚମ୍ପକଲତା ତ ଭଲ ଢଗ
ପଦେ ଗାଇଦେଲେ ।

ଭୃଙ୍ଗବିଦ୍ୟା—ଅଗୋ, ବିଶାଖେ ! ସେ ପରା ଜଣେ ପଣ୍ଡା, କଥା କହି-
ବାରେ କାହିଁକି କରିବେ ଦକା ? ଗାଉଛି ଗାଉଛି ଶୁଣ—

ଗୀତ ।

ରାଧା ପରି ରାଧା ସିନା ଗୋ ସଜନି !
ରାଧା ପରି ରାଧା ସିନା ।

ଆଉ ଯେତେ ବ୍ରଜେ ରମଣୀ ଅଛନ୍ତି; ସର୍ବେ ପିତ୍ତଳ ସେ ସୁନା ।
(ସଖି) ସ୍ତ୍ରୀ ମାତ୍ରକ ଅଛନ୍ତି ଯେତେକ,
ସର୍ବେ ପିତ୍ତଳ ସେ ସୁନା । ଘୋଷା ।

ଦଳିତାଞ୍ଜନକୁ ହସୁଛି ଯା କାନ୍ତି ସେ ଶ୍ୟାମ ପାଶରେ ଥିଲେ ।
ହରିତାଳ ବୋଲି ହେଲା ପରି ଦିଶେ କାନ୍ତିରେ କେ ତାହା ତୁଲେ ।୧।
କଳାକର ତ କଳା କରେ ରହିଲା ମୁଖକୁ ନୋହି ତୁଳନା ।
ଏପାରେ ତପ କରୁଛି ଗଙ୍ଗାତଟେ ହର ଜଟା ବନେ ଅନା । ୨ ।

ଅଶିବ ତାର ଅନାଇ ଦେଇ ମୁଖ ବୁଲାଇ ଦେଲେ ଏଣିକି ।
ଦଶଦଣ୍ଡ ଯାକ ଜୀଲୋତ୍ପଳମସ୍ତ ଧଣ୍ଟଛ ହେବା କଥା କି ? । ୩ ।
ସତ୍ୟଯାକ ଭାତ ପାଖୁଡ଼ା ଶେଯରେ ପଡ଼ିଥାଉଚ ଲୋଟି ।
ମଉଡ଼ ନାହିଁ କହୁତେ ହେଲେ ଅଙ୍ଗେ ଚନ୍ଦ୍ର ବସି ଦଣେ ଫୁଟି । ୪ ।
ଶତକୋଟି ଗୋପୀ କାଲି ବୋଲୁଥିଲେ ଶୁଣୁଥିଲି ତ ସବରେ ।
ଅମ୍ଭ କେଉଁ ପୁଣ୍ୟଫଳ ରାଧା ଥାଉ ସଦା ଶ୍ରୀକୃଷ୍ଣ କୋଳରେ ।୫।
କହୁଥିଲେ ଗର୍ଗ ମୁନେ ପୂର୍ଣ୍ଣବ୍ରହ୍ମ ସନାତନ ବୋଲି ଯାକୁ ।
ସେ ବ୍ରଜବଧୂଏ କେମନ୍ତ ନୋହିଲେ ଥିଲା ଅଧୀନ ହେବାକୁ । ୬ ।

[ ଗୋପାଳକୃଷ୍ଣ ]



ଲଳିତା—(ହସି କରି) ଭୁଗବଦନା ସଖି ! ସମସ୍ତ ଜାଣି ଭଲ ଗୀତଟିଏ ଗାଇ ଦେଲ ଗୋ, ଏ ଗୀତ କାହା ମନକୁ ନ ଆସିବ କହିଲ ?

ବିଶାଖା—ସଖି ଲଳିତେ ! ଆମ ରାଧାଙ୍କ ତପସ୍ୟା କମ ନୁହେଁ, ପୂର୍ଣ୍ଣବ୍ରହ୍ମ ହରି ପୂର୍ଣ୍ଣକଳା ଧାରଣ କରି ଏ ବୃନ୍ଦାବନରେ ବିହାର କଲାଦିନୁ ଗୋଲୋକପୁରୀ ଶୂନ୍ୟ ହୋଇଛି ବୋଲି ଦିନେ ନାରଦ ମହାଋଷି କହୁଥିଲେ ପରା ? କାହାଲାଗି ଗୋଲୋକ ଶୂନ୍ୟ ? ଆମ ରାଧାଙ୍କ ଲାଗି ସିନା, ଅଜ ଗୋଲୋକ ଭୁବନ ଅନ୍ଧକାର ?

ଚମ୍ପା—ରାଧାଙ୍କ ବ୍ରତ ଫଳରୁ ।

ଲଳିତା—ସଖି ରାଧେ ! ତୁମ୍ଭେ କି ବ୍ରତ କରି କେଉଁଠୁ ଏ ବର ପାଇଥିଲ ? ଯାହା କି କୋଟିବ୍ରହ୍ମାଣ୍ଡ ନାଥଙ୍କ ମନକୁ ମନେଇ ନେଇଚ ?

ଗୀତ ।

ସଖି ! କି ବ୍ରତ କରି ବର ପାଇଲୁ ଗୋ ।
ସେବ କେଉଁ ଦେବତାଙ୍କ ମନାଇଁଲୁ ଗୋ । ଘୋଷା ।
ସେବକ୍ଷା ବଇଶ୍ୱଜ୍ଞ    ସେବକ୍ଷୀ ପରୁ ଭର
ନବଙ୍କଶୋଶ୍ରି ପଲ୍ଲରେ ବୁଲାଇଲୁ ଗୋ । ୧ ।
ଜଗନ୍ମୋହନ ମାନସ ମଜ୍ଜାଇଲୁ ଗୋ ।
ମାନକର ପ୍ରପଦରେ ଲୋଟାଇଲୁ ଗୋ ।
ଯା ସ୍ମୃତି ଲବ ଭବ    ବହ୍ମାଦଙ୍କୁ ଦୁର୍ଲଭ
ତାଙ୍କୁ କର କୋଡ଼ରେ ତ ନଗୃଇଲୁ ଗୋ । ୨ ।
ଅଜ ଭୂଷଣମାନ ପାଟଶୋଭାଇଲୁ ଗୋ ।
ଧ୍ୟାନ ତୋ ରୂପ ସନ୍ତତ କରାଇଲୁ ଗୋ ।
କାନରେ କି ମନ୍ତ୍ରର    ଦେଲୁଟି ନିରନ୍ତର
ରାଧେ ହା ଶ୍ରୀରାଧେ ବୋଲି ଜପାଇଲୁ ଗୋ । ୩ ।
କେତେ ବର ତରୁଣୀଙ୍କି କନ୍ଦାଇଲୁ ଗୋ ।
ତାଙ୍କ ମନୋରଥ ଦ୍ରୁମ ଭଙ୍ଗାଇଲୁ ଗୋ ।
ବନମାଳୀ ସେ ଚନ୍ଦ୍ରା—    ବଳୀ ପ୍ରୀତି ପଥରେ
ଧୂଳି ଉଡ଼ୁଥିଲା ତୃଣ ଉଠାଇଲୁ ଗୋ । ୪ ।
ବନ ଯାକର କୁସୁମ ତୋଳାଇଲୁ ଗୋ ।
ପ୍ରସାଧନୀ ଦେଇ ଖୋସା ଖୋସାଇଲୁ ଗୋ ।
ମକରୀ ପତ୍ରାବଳୀ    ତିଳକ ସଜାଡ଼ାଇ
ପଦ ଧରାଇ ଯାବକ ଲେଖାଇଲୁ ଗୋ । ୫ ।

( ୰ ଗୋପାଳକୃଷ୍ଣ )



ଶ୍ରୀରାଧା—ସଖିଏ ଗୋ ! ସେହି ରଙ୍ଗ ଚନ୍ଦ୍ରାମଣି ବାବରୂଜଅଙ୍କୁ ଅଙ୍କ ପଲଙ୍କରେ ଧରିବ ବୋଲି ପଙ୍କଜ କୁସୁମରେ ଶଙ୍କର-

ଗଉରୀଙ୍କି କେତେ ପୂଜା କରୁଛ, ତାଙ୍କର ସେବାରେ ମୋ
ମନ କାଳ ଏହ୍ଲପର ଯାଉ ।

ଗୀତ ।

ରତ୍ନଚନ୍ଦ୍ରାମଣି ବାଙ୍କଚୂଳଅଙ୍କୁ ଅଙ୍କରେ ଧରବ ବୋଲି ଗୋ,
ପଙ୍କଜ କୁସୁମେ ଶଙ୍କର ଗଉରୀ ପୂଜା ଆରମ୍ଭି ବସିଲି ଗୋ ।
ତାଙ୍କର ସେବାରେ ମନ । ନେବ କହୁଛି ସଜନ ସେନ ଗୋ ।୧।
ମନ୍ଦମନ୍ଦ ହାସ କନ୍ଦରୁ ମଧୁର ଚନ୍ଦନ ବୋଳା ଶ୍ରୀଅଙ୍ଗେ ଗୋ ।
ବନ୍ଧା ରହିଛି ମୁଁ ରଜନୀ ଦିବସେ ପ୍ରିୟ ସଖି ତୁମ୍ଭ ସଙ୍ଗେ ଗୋ ।
ବୃନ୍ଦାବନ କଳାକର । ଛନ୍ଦା ଚରଣଟି ଫନ୍ଦା ମୋର ଗୋ । ୨ ।
ଆନନ୍ଦସାଗରେ ବୁଡ଼ ରହିଥିବ ମନ ଘୋଷଣା ନ ଶୁଣି ଗୋ ।
କନ୍ଦର୍ପ ମୋହନ ବୃନ୍ଦାରକ ବୃନ୍ଦବନ୍ଦନ ମୋ ମଥାମଣି ଗୋ ।
କୁନ୍ଦ ମନ୍ଦାର-ଅଧରୁ । ମଧୁ ବୃଷ୍ଟି ମୋର ମନ ସରୁ ଗୋ । ୩ ।

(ବ୍ରଜବାସୀ)

ଲୀଳାନିଧି—ସଖି ! ସେ ଶ୍ୟାମସୁନ୍ଦରଙ୍କୁ ତୁଳନା ଦେବାକୁ ଏକା ତୁମ୍ଭେ
ସିନା ? ଯଦି ତୁମ୍ଭ ଭଳି ରୂପବତୀ ସୁନ୍ଦରୀ ରମଣୀ ନ ଥାନ୍ତି
ତେବେ ବୃନ୍ଦାବନ ଲୀଳାଖେଳା କଏ କରନ୍ତା ସଧେ !

ଗୀତ ।

ଶ୍ୟାମସୁନ୍ଦରଙ୍କୁ ଦେବାକୁ ତୁଳନା ଗୋ ।
ଏ ବ୍ରଜରେ ଏକା ସଧେ ତୁମ୍ଭେ ସିନା ଗୋ । ଘୋଷା ।

କେତେକାଳ ବସି ବସି, କେତେ କାନ୍ତି ସୁଧାରାଶି,
ଆଣି ବଛାଣି ବିଧାତା ଗଢ଼ିଲି ନା ଗୋ । ୧ ।

ଯେ ତ୍ରିଭୁବନ ମୋହନ, ସେ ହେଲେ ତବ ଅଧୀନ,
ତବ ପ୍ରେମକାନ୍ତି ହେମ କଳା ସୁନା ଗୋ ।୨।

ନାଗର ମୁକୁଟମଣି, ସେ ମୋହନ ବଂଶୀପାଣି,
ନାଗରୀଙ୍କର ଅଗ୍ରଣୀ ଭାନୁଜେମା ଗୋ । ୩

ଧନ୍ୟ ଗୋ ଧନ୍ୟ ଯଶୋଦା, ଧନ୍ୟ ସର୍ବପୂଣ୍ୟ ଶିବ,
କୃଷ୍ଣନାମ ଅଦେୟ ରାଧା ନାମ ଜଣା ଗୋ । ୪ ।
( ବ୍ରଜବାସୀ )

ଶ୍ରୀରାଧା—ସଖି ଲଳିତେ ! ମୋତେ କେଉଁ ଗୁଣରେ ଶ୍ୟାମବନ୍ଧୁଙ୍କ ସଙ୍ଗେ ତୁଲ କରୁଛୁ ? ମୁଁ ତ ତାଙ୍କ ପଦଧୂଳିର ସମାନ ନୁହେ ?

ଗୀତ ।

ମୁହିଁ କି ? ଶ୍ୟାମବନ୍ଧୁ ତୁଳକ ଗୋ ।
ସମ ନୋହିବ ଯେ ପଦଧୂଳକ ଗୋ । ଘୋଷା ।
ତାମରସବନ କେଳ ଅଳକ, କି ମଣି ନଯୋଗ୍ୟ ତିଉମଣ୍ଡଳିକ ।୧।
ନାଗର ନଗର ବଳ ସଳଖ, ସାମ୍ୟ କରୁଛୁ ମୁଁ ତ ସୁଅଲକ ।୨।
ତୁଲ କରୁ ମୋତେ ବନମାଳିକ, ଶୁଣିଲେ ଜନ ମାରିବେ ତାଳିକ ।।
ନୀଲୋତ୍ପଳ ଗର୍ବ ଦଳ ଝଳକ, ଭୁଲୁଛୁ ଛଟା ହରିଦ୍ରା ମାଳକ ।୪।
ପ୍ରେମରତ୍ନ ଚନ୍ଦ୍ରାମଣି ଅଳକି, ଗ୍ରନ୍ଥିବ ଭାଙ୍ଗୁଛୁ କାଚମାଳିକି ।୫।



[ ୰ଗୋପାଳକୃଷ୍ଣ ]

ବିଶାଖା—ସଖି ! ତୁମ୍ଭେ ଶ୍ରୀକୃଷ୍ଣଙ୍କ ମନକୁ ବଶୀଭୂତକର ନେଇଚ ବୋଲି କିଏ ସ୍ୱୀକାର ନ କରିବ ? ତା ଯଦି ନୋହି ଥାଆନ୍ତା ରାଧା ରାଧା ବୋଲି କାହିଁକି କୃଷ୍ଣ ପାଗଳ ହେଉଥାଆନ୍ତେ ?

ଚମ୍ପା—ସଖି ଗୋ ! କୃଷ୍ଣ ଯେପରି ରାଧା ନାମରେ ପାଗଳ, ଆମ-ରାଧା ସେହିପରି କୃଷ୍ଣନାମରେ ପାଗଳୀ । ଦୁହିଙ୍କ ପ୍ରେମରେ ଦୁହେଁ ବନ୍ଧା, ସେଇତ ଲଗି ଇଏ ତାଙ୍କୁ ଦଣ୍ଡେ ନ ଦେଖିଲେ ବାଯ୍ୟାଣୀ, ସେ ଏଙ୍କୁ ନ ଦେଖିଲେ ବାଇଯା ।

ଲଳିତା—ଏକଥା ଟିକିଏ ମିଛ ନୁହେ, ଗୋ ଚମ୍ପେ ! କାହାକୁ ଊଣା କାହାକୁ ଅଧିକ କହିବା ? ରୂପରେ ଗୁଣରେ ଦୁହିଙ୍କି ଦୁହେଁ ସମାନ ।

ଗୀତ ।

ତୁମ୍ଭଙ୍କ ଦୁହେଁ ସମାନ ରୂପ ଗୁଣେ ସିନା ଗୋ ।
କୋଟିଏ ବ୍ରହ୍ମାଣ୍ଡେ ଆଉ କେ ହେବ ତୁଳନା ଗୋ । ଘୋଷା ।
ରାଧାକୃଷ୍ଣ ଗତପ୍ରାଣା, ରାଧାଗତ ପ୍ରାଣ କାହ୍ନା,
ଭଲ ବନ୍ଧ କରଥିଲା ଏରୂପ ଘଟନା ଗୋ । ୧ ।
ନୀଳମଣିରେ କାଞ୍ଚନ, ଜଳଦ୍‌ଲପର ସୁସମ,
ଯୁଗଳ ମାଧୁରୀ ହର ନଆଇ ଚେତନା ଗୋ । ୨ ।
ଆସ ଗୋ ବହନ ଆସ, ପୂରାଇବା ଅଭିଳାଷ,
ନିକୁଞ୍ଜ ମିଳନେ ଉଡ଼ାଇବା ପ୍ରେମବାନା ଗୋ । ୩।



ଲଳିତା—ସଖି ! ଆମମାନଙ୍କ ହସରହସ୍ୟ ଆଳାପ ଏତିକି ଥାଉ, ଚାଲ ଚାଲ ତମାଳକୁଞ୍ଜରେ କୁଞ୍ଜବିନୋଦିଆଙ୍କ ତୁଲେ ବାଙ୍କ ରଙ୍ଗ ରହସ୍ୟ ଲଗେଇବା । ଦେଖେ ପରା ମଦନମୋହନ କାହିଁ ବସିଥିବେ ?

ରାଧା—ଚାଲ ଗୋ ଚାଲ । ·

ସମସ୍ତେ—( ସମସ୍ବରେ ଗାନକଲେ )

ଗୀତ ।

ଆଗୋ ଚାଲ ଚାଲ, କୁଞ୍ଜେ କାହିଁ ରହିଥିବେ ନନ୍ଦଲାଲ । ଘୋଷା ।
ପ୍ରହରୁ ରଜନୀ ଗଲା ବଳ, ଦେଖ ଆକାଶରେ ତାରାବଳୀ,
ପୂର୍ଣ୍ଣଚନ୍ଦ୍ର ତୁଲେ ଉଠାନ୍ତି ଝଲ ମଲ । ୧ ।
ସୁଗନ୍ଧ ମଳୟ ମନ୍ଦବାତ, ବହି ଆସେ ଦେଖ ପ୍ରାଣମିତ
ବାସ ଫୁଟି ବିକାଶନ୍ତି ନାନାଫୁଲ । ୨ ।
ଆଜ ଆନନ୍ଦର ସୀମା ନାହିଁ, ବେଣବେଢ଼ୁ ଜାଣିଅଛ ମୁହିଁ
ପ୍ରେମସିନ୍ଧୁ ଉଛୁଳିବ ବନସ୍ଥଳ । ୩ ।

ନାଚୁଥ କିଶୋର ନୀଳମଣି ନବନାଗରୀ ଶ୍ରୀରାଧା ନାଚୁଥଣୀ,
ଫଗୁପଙ୍କାର ପାଣିରେ ହେବେ ଲାଲ । ୪ ।
ଉଠ ଉଠ ବୃନ୍ଦେ ଚନ୍ଦ୍ରମୁଖୀ, ବନ୍ଧୁ ଦରଶନେ ହେବ ସୁଖୀ,
ଫୁଲ ଶେଯେ ହେବ କଉତୁକ ଖେଳ । ୫ ।
[ ସଖିଗଣ ଅନନ୍ଦମନେ ଗୀତ ଗାଇ ରାଧାଙ୍କୁ ଘେନି ପ୍ରସ୍ଥାନ ]
ପଞ୍ଚପଟ୍ଟପରିବର୍ତ୍ତନ ।



ଚତୁର୍ଥଦୃଶ୍ୟ—ତମାଳ କୁଞ୍ଜମଣ୍ଡପ ।

[ ରାଧାଙ୍କୁ ମଧ୍ୟରେ ରଖି ସଖିମାନଙ୍କର ପ୍ରବେଶ । ]

ବୃନ୍ଦା—ସଖି ରାଧେ ! ଏହି ତମାଳ କୁଞ୍ଜ ଦେଖ କି ସୁନ୍ଦର ଦିଶୁଛି, ମାଧବୀଲତାଟି ଏହାର ବାହୁରେ ବେଢ଼ି କିପରି କୁସୁମିତ ହୋଇଛି । ଭ୍ରମରମାନେ ଗୁଣୁ ଗୁଣୁ ସ୍ୱନ ଛଳରେ ମିଳନ ଉତ୍ସବ ଉପଲକ୍ଷେ ଜୟଶଙ୍ଖ ବାଦନ କରୁଛନ୍ତି, କୋକିଳାଦି ପକ୍ଷୀମାନେ ସୁମଧୁର ସ୍ୱନରେ ପଞ୍ଚମତାନ ଧରି ମିଳନ ମହୋତ୍ସବ ଉପଲକ୍ଷରେ ସଙ୍ଗୀତ ଗାନ କରୁଛନ୍ତି । ମଳୟ ପବନ ଧୀର ଧୀର କରି ସୁଗନ୍ଧ ବ୍ୟଜନ ଢାଳୁଛି, ଅଏ ଏ ତମାଳମୂଳରେ ପ୍ରାଣବନ୍ଧୁଙ୍କୁ ଅପେକ୍ଷା କରି ବସିଥିବ, ମୁଁ ମଧୁପାନରେ ଯୋଗାଡ଼ କରେଁ ।

ଗୀତ ।

ମଧୁବନୁ ମଧୁପାନ ଦଥିବ ସମ୍ଭାର ।
ସଜାଡ଼ ଅଣେ ମୁଁ ଯାଇଁ ସୁରସିକା ବର ଗୋ । ୧ ।
ବସିଥାଅ ଏ ତମାଳ ମୂଳେ ବନୋଦରୀ ।
ଏହିକ୍ଷଣି ଶ୍ୟାମେ ଭେଟ ଦେବେ ନୀଳମଣି ଗୋ । ୨ ।
ସାଜ ଗୋ ସଙ୍ଗିନୀମାନେ ମିଳନ କୁଞ୍ଜକୁ ।
ବଗୁଳ ପଲ୍ଲବ ଶେଯେ କୁସୁମ ରଙ୍ଗକୁ ଗୋ । ୩ ।

ଫୁଲର ଝୁନ୍ଦୁଆ ଫୁଲ ତୋରଣ ଶିକୁଳି ।
ଫୁଲଝର ଫେଣ୍ଟା ଫେଣ୍ଟା ବାନ୍ଧ ସବୁ ଅଳି ଗୋ ।୪।
ଫୁଲର ଅଲଟ ଫୁଲ ଢାଙ୍କଣୀ ଝୁମର ।
ଫୁଲ ଦୋଳି ଫୁଲ ମାଣ୍ଡ୍ରୀ କରଥା ଚଅର ଗୋ ।୫।
ଚନ୍ଦନ କର୍ପୂର ପାନ ରଖ ଗୋ ସଜାଡ଼ ।
ଜାଳ ରତ୍ନଦୀପ ଗୁନ୍ଥୁ ଥାଅ ଫୁଲମାଳ ଗୋ ।୬।
ଫୁଲ ଛତି ଫୁଲର ତକିଆ ଥାଅ ରଚି ।
ଅବିଳମ୍ବେ ଆସିବ ମୁଁ ଯାଉଛି ଯାଉଛି ଗୋ ।୭।
( ବୃନ୍ଦା ଗାନ ସହିତ ପ୍ରସ୍ଥାନ । )



ଲଳିତା—ବୃଷଭାନୁ କୁମାରି ଗୋ ! କୁଞ୍ଜମନ୍ଦିରକୁ ବିଜେ କର

ଗୀତ ।

ବିଜେ କର ଗୋ ! ବୃଷଭାନୁ କୁମାରି ।
ଆସିବେ ଏକ୍ଷଣି ମୁରଲୀଧାରୀ [ବିଜେ କର ଗୋ] । ଘୋଷା ।
ଆମ୍ଭେ ସଖୀଗଣ ସକଳେ ମିଳି, କରିବୁଁ ମଣ୍ଡନ କୁସୁମ ଦୋଳି,
ପଲ୍ଲବ ଶେଯରେ ବଙ୍କିଭଙ୍ଗ କୁଟିଳ,
ବିଳସିବ ପରା ଅଟେଗୋ କିଶୋରି ।୧।
ସବୁ ଉପସ୍କର ଅଛି ସଜାଡ଼ା, ଆଜ ଯାହା ଯାହା ହୋଇବ ଲୋଡ଼ା,
ଯତନରେ ତାହା ସଜେଇ ଦେଉଛୁ,
ତୁମ୍ଭ ମନ ବୋଧ ହେବ ଯେପରି ।୨।
( ଏହା କହି ଶ୍ରୀରାଧାଙ୍କୁ ପଲ୍ଲବ ଶେଯରେ ବିଜେ କରାଇଲେ )



ବିଶାଖା—ସଖି ଲଳିତେ ! ମୋ ଗନ୍ଧ ଚନ୍ଦନ ଘୋଳା ହୋଇ ନାହିଁ ଗୋ, ମୁଁ ଘୋଳି ରଖିଦେଏଁ ।

( ତଥାକରଣ )

ଲଳିତା—ମୁଁ ମଧ୍ୟ ବଡ଼ଆ ଭଙ୍ଗି ରଖିଦେବ ଯାଉଛି ।

(ତଥାକରଣ)

ବିଶା—ଅଗୋ ! ମୁଁ ତ ନୀଳ ପୀତବସନ ଯୋଡ଼ିକ କୁଞ୍ଜ ରଖିନାହିଁ, ଚଞ୍ଚଳ ଭୁଞ୍ଜଦିଏଁ । (ତାହା କଲେ)

ଚମ୍ପକଲତା—ସଖି ! ମୋ ଫୁଲ ଚାମରଟି ସଜାଡ଼ିବ ପରା ?

(ତାହା କରି ବସିଲେ)

ତୁଙ୍ଗବିଦ୍ୟା—ସଖି ! ମର୍ଦ୍ଦଳଟି ଆଣିବଟି, ମୁଁ ସ୍ୱର ବାନ୍ଧି ରଖେଁ ।

(ମର୍ଦ୍ଦଳରେ ସ୍ୱର ଦେଲେ ଓ ବୀଣାର ତାର ସଳଖି ଝଙ୍କାରିଲେ)

ଇନ୍ଦୁରେଖା—ସଖି ତୁଙ୍ଗବିଦ୍ୟେ ! ମୋ ନାଚ ସେବା ତ ପଛକୁ ଅଛି ସଙ୍ଗୀତ ଆଳାପର ମୂର୍ଚ୍ଛନା କରୁଥାଏଁ ଦେଖିଲେ ! (ରଙ୍ଗିଣୀ ଉଚ୍ଚାରି) ସଖି ! ଏହି ରାଗରେ ଗୀତ ବସେଇବା ନା ?

ତୁଙ୍ଗବିଦ୍ୟା—ହଁଅ ଗୋ ! ମନେ ରଖି ଥାଅ ।

ସୁଦେବୀ—ସଖି ! ହେମ ଝାରିରେ ସୁବାସିତ ଜଳ ଏଠି ରଖିଲି, କେହି ଢ଼ାଳି ଦିଅ ନା । ମୁଁ ଫୁଲ ବଞ୍ଚଣିଟିଏ ସଜାଡ଼ି ଦିଏଁ ।

(ତାହା କଲେ)

ରଙ୍ଗଦେବୀ—ସଖି ସୁଦେବି ! ମୋ ଅଳତା ପାଦଟି ତୁମ୍ଭ ଜଳଝାରି ପାଖରେ ଥାଉ । ମୁଁ ଫୁଲ ଛତ୍ରଟି ତିଆରିବି ।

(ତା, କଲେ)

କୁନ୍ଦଲତା—ଆସ ଗୋ, ନୀଳାନନ୍ଦି ! ତୁମ୍ଭର ମୋର ମିଶି ଫୁଲ-ଗୁନ୍ଦୁଆ ତିଆରି କରିବା ।

ନୀଳାନନ୍ଦି—ମୁଁ ତ ଏଇ କଥା ପାଞ୍ଚୁଥିଲି ଗୋ; ଚାଲ ।

(ଦୁହେଁ ମିଳି ଫୁଲ ଗୁନ୍ଦୁଆ ସଜାଡ଼ିଲେ)

ଲବଙ୍ଗମଞ୍ଜରୀ—ସଖି ଦେଖିଲ, ମୁଁ ଏ ଫୁଲମାଣ୍ଡିଟି ତିଆରିଛି; ତୁମ୍ଭମାନଙ୍କ ମନକୁ ଆସୁଛି ? (ଦେଖାଇଲେ)

ବୃନ୍ଦଲତା—( ଦେଖିକରି ) ହଇ ଗୋ ଲବଙ୍ଗଲତେ ! ତମକୁ ଏମିତ ସୁନ୍ଦର ଫୁଲ ମାଣ୍ଡି ତିଆର କରି ଅପେକ୍ଷ ? ଅହା, ଭଲ ହୋଇଛି, ଭଲ ହୋଇଛି ।

ଲୀଳାବତୀ—କାହିଁ ଦେଖି ? ( ଦେଖୁ ଦେଖୁ ) ଅଗୋ ସତେ ଟୋ ଇଏ ତ ଅତି ସୁନ୍ଦର ଚନ୍ଦ୍ରଅଟିଏ ତିଆରିଛନ୍ତି । ରଖ, ରଖ, କ୍ଷେତ ଉପରେ ସଜେଇ ରଖ ।

ଲବଙ୍ଗ—( ତାହା ହଲେ ଓ ଫୁଲଗୁଚ୍ଛି ବସିଲେ )

ଅନଙ୍ଗମଞ୍ଜରୀ—ସଖି ! ମୁଁ ଏ ଫୁଲ ଟାହିଆ ଦୁଇଟି ସଜାଡ଼ିଛି, ନଅ

( ପ୍ରଦର୍ଶନ )

ଲୀଳାବତୀ—ତୁମ୍ଭ ଭଉଣୀ ରାଧାଙ୍କ ଚୂଳରେ ଖୋଷିଦିଅ, ଅଉ ଗୋଟିଏ କଳାକାହ୍ନୁଙ୍କ ବାଙ୍କଚୂଳରେ ଖଞ୍ଜିବାକୁ ରଖ ।

( ନେପଥ୍ୟରୁ ଶ୍ରୀକୃଷ୍ଣଙ୍କ ନୂପୁର ଶବ୍ଦ ହେବା )

ଶ୍ରୀରାଧା—ସଖି ! ଦେଖିଲ କିଏ ଆସୁଛନ୍ତି ?

ଲଳିତା—ରାଧେ ! ଅଉ କିଏ, ତୁମ୍ଭ ଚିତ୍ତଚୋରି ଅସିଲା ପରି ଜଣା ଯାଉଛି, ନଇଲେ ଏ ମଧୁର ମଧୁର ନୂପୁର ଧ୍ୱନି ଅ କାହାର ହେବ ? ଶୁଣ ଶୁଣ :—

ଗୀତ ।

କୁଞ୍ଜ ଦୁଆରେ ଶୁଣ ନୂପୁର ଧ୍ୱନି, ସଜନି ଗୋ ।
ଏତ ହେବେ ତୁମ୍ଭ ପ୍ରୀତି ଚିନ୍ତାମଣି । ଘୋଷା ।
[ଦେଖ] ବହୁ ଅସୁଅଛି ମନ୍ଦମନ୍ଦ,
ଭ୍ରମ ବନୋଦଆଙ୍କ ଅଙ୍ଗ ଗନ୍ଧ,
ଝୁଲି ଝୁଲି ନାଚ ଅସୁଅଛନ୍ତି,
ବୃଷଭାନୁସୁତା କଣ୍ଠମଣି ।
[ଦେଖ] ମଧୁକର ପ୍ରେମେ ହୋଇ ମତ୍ତ,
ଧାଇଁ ଅସୁଛନ୍ତି ଶତ ଶତ,

ଅନୁରାଗ ଚନ୍ଦ୍ରେ ଦେଖି ରାଧାନାଥେ,
ଲାବଣ୍ୟଭେଶେ ହସେ କୁମୁଦିନୀ । ୨ ।
ସୁବାସ କୁସୁମ ବନେବନେ,
ଫୁଟି ଉଠୁଛି ଗୋ ସ୍ନେହ ମନେ,
ମୃଦୁସ୍ୱରେ ପିକ ଜଣାଇ ଦେଉଛି,
ଆସିଲେଣି ରାଧା ମୁକୁଟମଣି । ୩ ।

( ଶ୍ରୀ ମୋହନସୁନ୍ଦର ଦେବ ଗୋସ୍ୱାମୀ )

ବିଶାଖା—ରାଧେ ! ଆସିଲେଣି ଗୋ, ଆସିଲେଣି ।

ଶ୍ରୀରାଧା—ଅହା ଏତେବେଳକେ କଅଣ ଏ ଅଭାଗ୍ୟ ଦୁଃଖିନୀ ମନେ ପଡ଼ିଲି ? ପ୍ରାଣବନ୍ଧୁ ! ଆସ ଆସ ।

ଗୀତ ।

ବନ୍ଧୁ ଆସ ବନ୍ଧୁ ଆସ, ମୋର ହୃଦୟ ପ୍ରସୂନ ବାସ ହେ । ପଦ ।
ଶୂନ୍ୟେ ବସିଅଛି ଅଭାଗ୍ୟ ଦୁଃଖିନୀ ଏ କୁଞ୍ଜ ମନ୍ଦିର ପାଶ ହେ ।
ଏତେବେଳେ କାହିଁ ମନରେ ପଡ଼ିଲି ପ୍ରାଣ ପ୍ରଭୁ ପୀତବାସ ହେ ।୧।

( ଉଠିଯାଇ ଖଣ୍ଡିତୁରୁ ପ୍ରଣାମ ସହିତ କରଧରି ଆଣିଲେ )

ଶ୍ରୀକୃଷ୍ଣ—[ହସି ହସି] ପ୍ରିୟେ ! ମୁଁ ତୁମ୍ଭଙ୍କୁ କିମସେମାନ ଭୁଲେ କି ?

( ଏହା କହି ଓଷ୍ଠରେ କରଦେଲେ )

ଶ୍ରୀରାଧା—ପ୍ରାଣନାଥ ! ତୁମ୍ଭ ମୁଖଚନ୍ଦ୍ରମାଙ୍କ ଅଦର୍ଶନ ହେତୁ ଚାତକାଙ୍କ ପରି ବସି ରହିଥିଲି ।

[ ଏହା କହି ଆଲିଙ୍ଗନ କଲେ ଓ ମାଳା ଦାନ ]

ଶ୍ରୀକୃଷ୍ଣ—ପ୍ରିୟେ ! ଏହି ଅନୁକମ୍ପା ମୋର ଏକା ଲୋଡ଼ା ।

[ ପ୍ରତି ଆଲିଙ୍ଗନ ପ୍ରଦାନ କରି ମାଳାଦାନ କଲେ ]

ଲଳିତା—ଅହା ! ନିକୁଞ୍ଜରାଜରାଣୀଙ୍କ ମିଳନ ମାଧୁର୍ଯ୍ୟ ଅଜ୍ଞ କି ମନୋହର ? ଦାସୀର ଏହି ଫୁଲହାରଟି ଘେନ ।

( ମଲ୍ଲୀହାରଟିଏ ଦୁହିଙ୍କ ଗଳାରେ ଦେଲେ )

ସମସ୍ତେ—(ସେହିପରି ଗୋଟିଏ ଫୁଲମାଳା ଦୁହିଙ୍କ ଗଳେ ଦେଲେ)

ବିଶାଖା—( ଯୁଗଳ ଶ୍ରୀଅଙ୍ଗରେ ଚନ୍ଦନ ଲେପିଲେ )
ଲଳିତା—(ବକ୍ଷଅ ଲଗି କସ୍ତୁରି ଦେଲେ )
ରଙ୍ଗଦେବୀ—(ଯୁଗଳ ଚରଣରେ ଅଳତା ଲଗାଇଲେ )
ସମସ୍ତେ—(ଫୁଲ ଅଳଙ୍କ ଗୁମର ଧରି ବାନ୍ଧିଲେ ଓ ସମସ୍ତରେ ବାଦ୍ୟ-
ଯନ୍ତ୍ର ସହ ମିଳନ ସଙ୍ଗୀତ ଗାନ ଆରମ୍ଭିଲେ )

ଗୀତ ।

[ ମାଧୁରୀରେ ମାଧୁରୀରେ ମାଧୁରୀ ବୃଦ୍ଧେ ]

କଶୋଭା ଏ ବୃନ୍ଦାବନ, ସଖି ! ମଧୁର ବୃନ୍ଦାବନ ।
ଶ୍ରୀରାଧା ଗୋବିନ୍ଦ ଠାଣି ଯୁଗଳ ମିଳନ । ଘୋଷା ।
ଗୋଲୋକ ସାର ସମ୍ପତ୍ତି ଭୁବନ ମୋହନ ।
ହାସେ ହାସ ମିଶା ମିଶି ନୟନେ ନୟନ । ୧ ।
ବନ ମାଳ ବୈଜୟନ୍ତୀ ମୋତି ହାର ମାନ ।
ଦୁହିଙ୍କ ଗଳାକୁ ଦିଶୁଅଛି କି ଯତନ । ୨ ।
ଶିଖିଚୂଳ ଫୁଲଗଭା ଅହା କି ଶୋଭନ ।
ଗଣ୍ଡେ ଗଣ୍ଡ ମଣ୍ଡନ ଟି ମଧୁର ଚୁମ୍ବନ । ୩ ।
ଯୁଗଳ କରେ ମୁରଲୀ ଅପୂର୍ବ ଘଟନ ।
ଧନ୍ୟ ଧନ୍ୟ ଆମ୍ଭ ପୁଣ୍ୟ ଧନ୍ୟ ଏ ନୟନ । ୪ ।

( ସମସ୍ତଙ୍କର ମଧୁର ନୃତ୍ୟ )

ବୃନ୍ଦା—( ନେପଥ୍ୟରୁ ପ୍ରବେଶ ପୂର୍ବକ ) ବାଃ ବାଃ ବେଶ୍ ବେଶ୍ ।
ଶ୍ରୀକୃଷ୍ଣ—କି; ବୃନ୍ଦେ ! ଆସ, ଆସ ।
ବୃନ୍ଦା—ଭବବନୋଦଅ ହେ ! ଏ ଭାବ କେମିତି ମଧୁର ?
ଶ୍ରୀକୃଷ୍ଣ—ବେଶ୍, ବେଶ୍, ବୃନ୍ଦେ ! ତୁମ୍ଭଯୋଗେ ସୁସମୟରେ ଭାବ-
ମୟୀ ରାଧାଙ୍କୁ ପାଇ ସୁଖ ସିନ୍ଧୁରେ ଭାସୁଛି ।
ବୃନ୍ଦା—ତେବେ ବୃନ୍ଦାର ମଧ୍ୟସ୍ଥି ପାଉଣାଟା ହିସାବ କରି
ମିଟେଇ ଦିଅ ?

ଶ୍ରୀକୃଷ୍ଣ—ବୃନ୍ଦେ ! ତୁମକୁ ମୁଁ ଅଉ କଅଣ ଦେଇ ପାରିବି ? ଏ ହୃଦୟ ସମେତ ଦେଇ ସାରିଛି, ଦେବାପାଇଁ ଅଉ କଅଣ ବାକି ଅଛି ?

ବୃନ୍ଦା—କଅଣ କହିଲ ଶ୍ୟାମ ! ଆଉ କଅଣ ବାକି ଅଛି କହୁଛ ? ହଇରେ ! ଶଠ ମୁକୁଟ ! ଆଉ କିଛି ନାହିଁ ? ତମକୁ ଅଭାବ, କଅଣ ଯେ ଏପରି କହିଲ ? ତୁମେ ପରା ରାଜପୁତ୍ର ? ତୁମ ପାଖରେ ଯାହା ଯାହା ଅଛି, ଏ ତ୍ରିଭୁବନରେ ତାହା ଅଛି କି, କହିଲ ଦେଖି ? ତୁମ ଭଳି ପୀତପଟ୍ଟ କିଏ ପିନ୍ଧିଛି ? ତୁମ ଚୂଳ ପରି ତ୍ରିମୁଣ୍ଡି ଶିଖିପୁଚ୍ଛ ଚୂଳ କାହାର ଅଛି ? ତୁମ ହାତରେ ଯେଉଁ ପରଚୁଡ଼ା କୁଳଛଡ଼ା ମୁରଲୀଟି ଧରିଛ, ଏପରି ବଂଶୀ, କା ହାତରେ ଅଛି ? କହି ବସିଲେ ଗୋଟିଏ ପୋଥି ହେବ, ହଇ ହେ ! ତୁମ୍ଭେ ଏ ଭଳି ଠକ ପୁରୁଷ ? ହଉ; ହଉ ଏ ବୃନ୍ଦାବନର ପୁରସ୍କାରଟା ଚପଳ ହଉ, ଭଣ୍ଡା-ଭଣ୍ଡିରେ ଦରକାର ନାହିଁ ।

ଶ୍ରୀକୃଷ୍ଣ—ବୃନ୍ଦେ ! ତୁମେ ଯାହା କହିଲ, ପୀତଧଡ଼ା, ମୋହନ ଚୂଡ଼ା, ମୋହନବଂଶୀ କଥା ? ସେଥିରେ ମୋର ଅଧିକାର ଅଛି କି ? ତାହା ସବୁ ପରା ତୁମେମାନେ ରାଇ ସଜାହେବାଦିନ ମୋଠାରୁ ଛଡ଼ାଇ ନେଇ ରାଧାଙ୍କ ଜିମା କରି ଦେଇଥିଲ, ମୁଁ ମାଗିଆଣି ବ୍ୟବହାର କରୁଛି, ମୋର ସେ ସବୁ ଦ୍ରବ୍ୟରେ ଅଧିକାର ଅଉ କେଉଁଠି ? କେବଳ ଗୋଟିଏ ଜିନିଷ "ମୋର" ଅଛି ସତ୍ୟ ? ତାହା,ତ ମଧ୍ୟ ତୁମ୍ଭମାନଙ୍କୁ ଅନେକ ଦିନରୁ ମୋ ମନେ ମନେ ଦେଇ ସାରିଛି ।

ବୃନ୍ଦା—(ହସି ହସି) ସେ ଜିନିଷଟି କଅଣ କଳାକାହ୍ନୁ ।

ଶ୍ରୀକୃଷ୍ଣ—ମନ୍ତୁ କଅଣ ତୁମେ ଜାଣି ନାହିଁ ? ନିଜେ ମୁଁ ।

ବୃନ୍ଦା—ତା' ହେଲେ ତୁମେ କଅଣ ଅମ ମାନଙ୍କର ?

ଶ୍ରୀକୃଷ୍ଣ—ନିଶ୍ଚୟ ।

ବୃନ୍ଦା—(ହସିକରି) କି କହୁଚ, ଏତେଦୂର ? ଏକଥା, ସତ, ନା ମିଛ ?

ଶ୍ରୀକୃଷ୍ଣ—କାହିଁକି ବୃନ୍ଦେ ! ତୁମର ବିଶ୍ୱାସ ହେଉ ନାହିଁ ?

ବୃନ୍ଦା—କେମିତି ବିଶ୍ୱାସ ହେବ କୃଷ୍ଣ ! ତୁମେ ଯେ ପୁରୁଷ ଜାତି, ତୁମମାନଙ୍କ ହୃଦୟ ଅତି କଠିନ; ଏତେବେଳେ ସରଳ କଥା କହୁଚ-ପରକ୍ଷଣରେ ଏହି ସରଳଭାବଟି ମହାକୁଟିଳ ହୋଇଯିବ, ଏ ନରମଭାବଟି ଗରମ ହୋଇଯିବ, ଏତେବେଳେ ଜଳପରି ତରଳଭାବଟି ପରେ ପଥରପରି କଠୋର ଗୁଣକ ଅନୁକରଣ କରିବ, ଏହି ଥଣ୍ଡା ସ୍ୱଭାବଟି ସମୟରେ ଦାରୁଣ ଉଗ୍ର ମୂର୍ତ୍ତି ଧାରଣ କରିବ । ତୁମକୁ ଚହ୍ନିବା ସହଜ କି ଶ୍ୟାମ ?

ଗୀତ ।

ତୁମକୁ ଚହ୍ନିବା, ସହଜ କି ଶ୍ୟାମ,
କେତେବେଳେ କେଉଁ ଭାବେ ହୁଅ ଭ୍ରମ ॥

ଶ୍ରୀକୃଷ୍ଣ—କାହିଁକି, ମୁଁ ତୁମମାନଙ୍କ ସଙ୍ଗେ କେବେ ମନ୍ଦବ୍ୟବହାର କରିଛି କି ବୃନ୍ଦେ ?

( ପୂର୍ବଗୀତାଂଶ । )

କଟି ଦେଇ ତୁମେ କଥାରେ କଥାରେ,
ଧରାଇ ଦିଅ ଆକାଶ ଚାନ୍ଦ କରେ,
ଆମେମାନେ ସେ ମରମକୁ ନ ବୁଝୁଁ,
ଭୁଲି ଯାଉଁ ତୁମ ମୋହନରୂପରେ । ୧ ।

ଶ୍ରୀକୃଷ୍ଣ—କଅଣ କହିଲ ବୃନ୍ଦେ ? କଣ, କଣ ?

( ପୂର୍ବଗୀତାଂଶ । )

କେତେ ପ୍ରେମ ଜାଣ ହେ ନଟନାଗର,
ରସରେ ରସାଇ ପାର ହେ ଅପାର,
ଶେଷରେ କରିଅ ବଡ଼ ନାରଖାର,
ଏହି ବାହାଦୁର ଅଛି ତୁମ୍ଭଠାରେ । ୨ ।

ଶ୍ରୀକୃଷ୍ଣ—କାହିଁକି ବୃନ୍ଦେ ! ମୁଁ କଅଣ ଏଡ଼େ ଅବିଶ୍ୱାସୀ ? ତେବେ ମୋତେ କଅଣ ତୁମେମାନେ ଆଦୌ ବିଶ୍ୱାସ କରନାହିଁ ?

ବୃନ୍ଦା—କେମିତି ବିଶ୍ୱାସ କରିବୁଁ କହିଲ ଦେଖି ? ମନୁଷ୍ୟକୁ ମନୁଷ୍ୟ ବିଶ୍ୱାସ କରେ କେବଳ ବଚନରେ ତୁମର ଗୋଟିଏ କଥାର ଠିକ୍ ମରମତ ପାଇଲୁ ନାହିଁ, ତୁମେ ମୁଖରେ ଯାହା କହ, କାର୍ଯ୍ୟରେ ତାହାର ବିପରୀତ କର । ଏଇଟା ତମ ପୁରୁଷସ୍ୱଭାବ । ଯେତେବେଳ ଯାଏଁ ପାଖରେ ଥାଅ ତେତେବେଳ ଯାଏଁ ଆପଣାର ହୋଇଥାଅ, ପାଖରୁ ଅନ୍ତର ହେଲେ ତୁମପର ତୁମେ

ଶ୍ରୀକୃଷ୍ଣ—କପର ?

ବୃନ୍ଦା—ଏକାବେଳେକେ ମନରୁ ସବୁ ପାଶୋର ପକାଅ । ତୁମ ପୁରୁଷ ଜାତିର ଏଇ ବିପରୀତ ଧାରାଟି ଅଛି ।

ଶ୍ରୀକୃଷ୍ଣ—ବିପରୀତ ଧାରା କପରି ହେଲା ?

ବୃନ୍ଦା—ତେବେ କହୁଛି ଶୁଣ :—

"ବିଶ୍ୱାସ କଲେଟି ପର ପୁରୁଷେ,
ଅକାରଣେ ପ୍ରାଣ ଯାଏଟି ଶେଷେ"

ଶ୍ରୀକୃଷ୍ଣ—ଓଃ ତୁମେମାନେ ଜାଣିବାରେ ମୁଁ ତୁମମାନଙ୍କ ପ୍ରାଣକୁ ମାରି ପକାଇବାକୁ ଚେଷ୍ଟା କରେଁ ?

ବୃନ୍ଦା—ଏଇତ ସେଇଁ କହନ୍ତି ଗଜକୁ ମୂର୍ଖ, ହଇ ହେ, ! ପ୍ରାଣରେ ଜଳ ବଳ କରେଇବାଠାରୁ ଏକାବେଳେକେ ମାରି ଦେବାଟା କଅଣ ବଡ଼ କି ? ତୁମ ପ୍ରେମର ଏଇ ଲକ୍ଷଣ ଅଛି ଯେ; ତାହା ଲୋହକାର ଷଣ୍ଢ଼ୁଅସି ପରି, କଅଁରେ ତତେଇ ପାଣିରେ ବୁଡ଼େଇ ସେ ଯେପରି କଲବଲ କରାଏ, ତୁମ ସ୍ୱଭାବ ଠିକ୍ ତାହା ତୁମେତ ଗୋରୁଚରେଇବା ଲୋକ, ପ୍ରେମର କଥା ତୁମେ କଅଣ ବୁଝିବ ?

ଶ୍ରୀକୃଷ୍ଣ—ତା ହେଲେ ବୋଧ ହୁଏ ତୁମେମାନେ ଧାରଣା କରିଛ ଯେ ମୁଁ ଗାଈଚରେଇବା ଲୋକ, କେବଳ ଗାଈ ଚରେଇ ଜାଣେ ପ୍ରେମର କିଛି ଧାର ଧାରେ ନାହିଁ ?

ବୃନ୍ଦା—ନିଶ୍ଚୟ ! ପ୍ରେମର ତତ୍ତ୍ୱ ତୁମେ କଅଣ ବୁଝିବ ? ତୁମେ କେବଳ ଚୋରି କରି ଜାଣ, ଅଳ ଗାଈ ପଛରେ ଗୋଡ଼େଇ ଜାଣ । ଅଉ ପ୍ରେମକଥା କଅଣ ଜାଣିବ ?

ଗୀତ ।

ପ୍ରେମତତ୍ତ୍ୱ ତୁମେ କିସ ଜାଣିବ ହେ କପଟିଆ ନାଗର ହରି ।
କ୍ଷୁଧାବେଳେ ଖାଦ୍ୟ ସୁଧାରୁ ସୁଅଦ ଲାଗେ ଧିନା ବଂଶୀଧାରି ! ।
ଅସମୟ ହେଲେ କି ହେବ ଅଉ, ସମୟରେ ଲୋଡ଼ା ନୁହଇ ଯେନ୍ତ୍ର ।୧
ଯେତେବେଳେ ଯାର ନିକଟରେ ଥାଅ ତାକୁ ଦେଖ ଅପଣାର ।
କାର୍ଯ୍ୟ ସରିଗଲେ ଅଉ କେ ପଚାରେ କରିଦିଅ ସାତପର ॥
ମନେ ହେଜ ଘନଶ୍ୟାମସୁନ୍ଦର ! ସତ କି ମିଛ ମୁଁ କହୁବାଗର ।୨।

ଶ୍ରୀକୃଷ୍ଣ—ଏତେ ଅବିଶ୍ୱାସ ଯଦି, ତେବେ ଅଗ୍ରେ ନ ବୁଝି, ନ ବିଚାରି ପରିଣାମ ନ ଭାବି ମୋତେ ଏ ଭଳି ମଜେଇଲ କାହିଁକି ?

ବୃନ୍ଦା—କପାଳ ଯୋ ଶୁଣେଇଲ, ଆମେମାନେ ତୁମକୁ ମଜେଇଲୁଁ, ନା, ତୁମେ ଆମମାନଙ୍କୁ ମଜେଇଲ ? ଜାତି, କୁଳ, ମାନ, ମହତ୍ତ୍ୱ ସବୁ ଲୁଟି କରି ନେଲ, ପାଲଟାବସନ ଚୋରିକରି ନେଇ କଦମ୍ବ ଡାଳରେ ଉଠି ରଙ୍ଗ ଦେଖିଲ, ଭାଣ୍ଡମାନ-ଭାଙ୍ଗି ସର, ଲବଣୀ ଚୋରେଇ ଖାଇଲ, କହୁଛ କଅଣନା ଆମେମାନେ ମଜେଇଲୁଁ ? ମଜେଇଲ ଏକା ତୁମେ, ଶେଷରେ ପୁଣି ଓଲଟି କହୁଛ ଆମମାନଙ୍କୁ ? କଅଣ ନାସ୍ତି ଦେଖି ରହସ୍ୟ ଲଗେଇଛ ?

ଶ୍ରୀକୃଷ୍ଣ— ଏବେ ଏ ସବୁ ବାଜେ କଥା ଛାଡ଼ି ଅସଲ କଥା କହ;

ବୃନ୍ଦା—ଅସଲ କଥା କଅଣ ଶ୍ୟାମ !

ଶ୍ରୀକୃଷ୍ଣ—ପ୍ରେମର କଥା ।

ବୃନ୍ଦା—ତୁମ ପାଖରେ ଆଉ ପ୍ରେମକଥା କହିବ କଅଣ ?

ତୁମେ କି, ପ୍ରେମର କଦର ବୁଝିବ ନା ଶୁଝିବ ଯେ, ପ୍ରେମକଥା କହିବ ? ତୁମ ହୃଦୟରେ କଣ ପ୍ରେମର ଚିହ୍ନ ଅଛି ? କେବଳ ଯୁବତୀ ସ୍ତ୍ରୀଙ୍କ ହତାଦର କରିଜାଣ । ଯେ କି ପ୍ରେମ କିଭଳି ଜିନିଷ ତା, ବୁଝେଇ ନାହିଁ କି ଶିଖେଇ ନାହିଁ, ତା, ପରି ଅପ୍ରେମିକ ପାଖରେ ପ୍ରେମକଥା କହିବା ଏକଦମ୍ ନିଷେଧ ।

ଗୀତ ।

ପ୍ରେମ କଥା କହିବାକୁ ମୋତେ ଅଛି ମନା ।
ତୁମ ଭଳି ଅପ୍ରେମିକ ପାଶେ ଅହେ କାହ୍ନ ॥
ରାଧାନାଥ ବୋଲି ଆଉ ଡାକନ୍ତୁ ନାହିଁ ।
ସବୁ ଜଣା ଯାଇଅଛି ହେ କଳା କହ୍ନାଇ ॥
ଏବେ ଶୁଣି ମୋର ଭାଷ ଯାଅ ଯାଅ ଚଳି ।
ଚନ୍ଦ୍ରା ଚନ୍ଦ୍ରମୁଖି ପାଶେ ଅହେ ବନମାଳି ! ॥
ସେହି ସିନା ଜାଣେ ପ୍ରେମ ମଉଜ,
ଲେଖାରେ ତୁମ୍ଭର ଯେଣୁ ଭାଉଜ, (ସେହିସିନା)
ଯାଅ ତା ନିକଟେ ରହିକ ସଜ, (ସେହିସିନା)
ଗୋପନେ ତା କୁଞ୍ଜେ ନଶି ବସିବ ହେ ସୁଖେ ।
ଛାଡ଼ ଏ କୁଞ୍ଜର ସୀମା ଲାଜ ନାହିଁ କି ମୁଖେ ।
ହେ ଶଠ ମାନଙ୍କ ଗୁରୁ ଲମ୍ପଟ ହରିଅ ।
ତୁମ ସଙ୍ଗେ କାର୍ଯ୍ୟ ନାହିଁ ନୂହ ଏଥୁ ଠିଅ ।
କେତେଥର ପସ ପଢ଼ିଛ ଚିହ୍ନା ।
ଚନ୍ଦ୍ରାବଳୀ କୋଳେ କାଳିଆ ସୁନା । (କେତେଥର)
ଯାଅ ସତ୍ୱର ସେ ତୁମ ଧନା । (କେତେଥର)
ଆମ ସଖୀଙ୍କୁ କନ୍ଦାଇ ମାର ନା । (କେତେଥର) ।୨।



ଶ୍ରୀକୃଷ୍ଣ—ହାଏ ଏଣି କଣ ଶେଷରେ ଏଇ ଅପମାନ ? ତେବେ ଯାଉଛି । ( ଗମନୋଦ୍ୟତ )

ବୃନ୍ଦା—(ହାତଧରି ପକାଇ) ଛି, ଛି; ଶ୍ୟାମ ! ତୁମକୁ କଅଣ ରସ-ବୋଧ ନାହିଁ କି ? ଛଳକଥା ପଦେ ସହିପାରୁ ନାହଁ ! କହିବାମାତ୍ରେ ପଳେଇ ଯାଉଛ ? ହଇ ହେ ! ତୁମଠେଇ ଏତେ ରାଗ ଅଛନ୍ତି ? ହେଉ ହେଉ, ସବୁ ଜଣାଗଲାଣି, କହୁଁ କହୁଁ ଏ ବୃନ୍ଦା କଅଣଗୁଡ଼ାଏ କହି ପକେଇଛି ସିନା ! ଏ ଛୋଟକଥା ଧରିବା ତୁମ ପକ୍ଷେ କଣ ଉଚିତ ? ନାରୀଜାତି ପରା ଆମେମାନେ, ଆମମାନଙ୍କ କଥାକୁ ଧରି ବସିଲେ ଚଳିବ କି ? ତୁମେ ପରା କ୍ଷମାନିଧି ! ସହସ୍ରେ ଦୋଷ କଲେ ମଧ୍ୟ କ୍ଷମାଦେଇ ପାର ? ଏଇ ସାମାନ୍ୟ ଛଳ କଥାକୁ ତୁମର ବୋଧା ବୋଧ ଜ୍ଞାନ ହେଇ ପାରୁ ନାହିଁ ? ଯଦି ବେଶିକଛି ତୁମ ମନରେ ଦୁଃଖ ହୋଇ ଥାଏ, ତେବେ ମାଫ୍ କର ! ପ୍ରେମ ଶିକ୍ଷାତ ଦିନେ ଓଳିଏ ନୁହେ, ପୁଣି ପ୍ରତିଶୋଧ ନେବୁଁ ହେ, ଏବେ ଆସ ଆସ । ( ହାତ ଧରି ଟାଣିବା )

ଶ୍ରୀକୃଷ୍ଣ—ବେଶ୍ ମଜାତ ! ତୁମେ ମୋତେ କଅଣ କରି ପାଇଲ ବୃନ୍ଦେ ! କହିଲ ଦେଖି ? ଯିବାକୁ ଛାଡ଼ୁ ନାହଁ, ପୁଣି ଏଠି ରହିଲେ ନାନା କଥା କହି ଜ୍ୱାଳାତନ କରୁଛ, ଇଏତ ବଡ଼ ହରକତ ? ହୁଏତ ଛାଡ଼ିଦିଅ ମୁଁ ବାହାର ଯାଏଁ ନଚେତ୍ ପ୍ରେମ କଥା କହି ମୋତେ ଆନନ୍ଦ ଦିଅ । ଦୁଇ ନାଆରେ ଗୋଡ଼େଇଦେଇ ହଇରାଣ କରୁଛ କିଆଁ ?

ବୃନ୍ଦା—ହଇରାଣ କଲି କଅଣ ଶ୍ୟାମ ! ତୁମେ ବୁଝି ନ ପାରି ନିଜେ ନିଜେ ହଇରାଣରେ ପଡୁଛ, ମୋ ଅଭିଳାଷ ଏଇ, ଶୁଣ

ଗୀତ ।

ରାଧା କୃଷ୍ଣ ଏକାସନେ କର ହେ ବିଜୟ ।
ପ୍ରେମାନନ୍ଦେ ଦେଖିବୁଁ ସେ ଶୋଭା ସଖିଚୟ ।

ଅଛି ଏହି କାମନା ମୋହର ବନ୍ଧୁଜନ୍ ।
ପୂର୍ଣ୍ଣକର ତାହା ଏବେ ହେ କାଳିଆ କାହ୍ନୁ ॥
ତେବେ ସବୁ ଦୁଃଖ ଦୂର ହେବ ମୋର ମନ୍ ।
ପୁଷ୍ପ ଶେଯେ ଷଜେ କର ପୀତ ନୀଳ ତନ୍ ॥



ଶ୍ରୀକୃଷ୍ଣ—ବୃନ୍ଦେ ! ଇଏ ଅଉ ବଡ଼ କଥା କଅଣ ? ରାଧା ଯେ ମୋ ଅଙ୍ଗର ଅଧା, ଦେହର ପ୍ରାଣ, ନାସାର ନିଶ୍ୱାସ, ହସ୍ତର ଅଙ୍ଗୁଳି । ସର୍ବଦା ରାଧା ସଙ୍ଗରେତ ମୁଁ ଯୁଗଳ ଭାବରେ ରହିବାପାଇଁ ଲାଳାୟିତ, କେବଳ ତୁମେମାନେ ବ୍ୟସ୍ତ କରୁଅ ବୋଲି ମୁଁ ଡ଼ର ଡ଼ର ରହିଥାଏଁ ଅଦ୍ୟ ପ୍ରଦଙ୍କାର ଯୁଗଳ ଭାବରେ ରହି ତୁମ ବାସନା ପୂର୍ଣ୍ଣ କରୁଛି ଦେଖ । ବୃନ୍ଦେ ! ରାଧା ନିକଟରେ ମୁଁ କେତେ ଋଣୀ । ଏ ଋଣରୁ ମୁଁ ସହଜରେ ମୁକ୍ତି ପାଇବ ନାହିଁ, ଏ ଋଣମଧ ଏ ଜୀବନରେ ପରିଶୋଧ କରି ପାରିବ ନାହିଁ । ରାଧା ପ୍ରେମ ଋଣରେ ମୁଁ ଚିରକାଳ ବନ୍ଧା ଅଛି ।

ଗୀତ ।

ରାଧା ପ୍ରେମ ଋଣେ ମୁହିଁ ଚିରକାଳ ବନ୍ଧା ।
ଇହକାଳେ ପରକାଳେ ମହାଜନ ରାଧା ।
ମୁହିଁ ଖାତକ ତାର ( ତେଣୁ )
ଲେଖି ଦେଇ ଅଛି ଋଣ ପତର ।
ଦସ୍ତଖତ କରି ନିଜହସ୍ତର । ମୁଁ ଖାତକ ତାର । ୧ ।

ରାଧା ଭାବ ରାଧା ପ୍ରେମ ରାଧା କାନ୍ତି ଧରି ।
ଅନ୍ୟ ଜନ୍ମେ ହେବି ମୁହିଁ ଦାଣ୍ଡର ଭିଖାରି ।
ରାଧା ନାମକୁ ଗାଇ । ( ବୁଲିବି ମୁଁ )

ଆନନ୍ଦେ ପ୍ରେମ ଡମ୍ବରୁ ବଜାଇ ଗୋ ।
( ରାଧା ) ନାମକୁ ଗାଇ ।
ଦ୍ୱାରେ ଦ୍ୱାରେ ଭିକ୍ଷା ମାଗିବ ଯାଇଁ ଗୋ । ନାମକୁ ଗାଇ ।୨।
ମନେ ମନେ ସ୍ଥିର କରିଅଛି ବୃନ୍ଦେ ଏହି ଚିନ୍ତ ଅଭିଳାଷ ।
ପୂରଣ ହୋଇବ ଯେତେବେଳେ ଏହା ତେବେ ବା ହେବ ଖଲାସ ।
ରାଧା ଋଣରୁ ପିନା ( ମୁକୁଳିବ ) ରାଧା ଋଣରୁ ପିନା ।
କହିଲ ମରମ ଜାଣ ନବୀନା ଗୋ । ୩ ।



ବୃନ୍ଦା—ହଇହେ ଚିତ୍ତଚୋର ! ରାଧା ପ୍ରେମରେ ଯଦି ତୁମ୍ଭେ ଋଣୀ ଅଛ ବୋଲି ସ୍ୱୀକାର କରୁଚ ? ସମୟ ସମୟରେ ପ୍ରେମମୟୀଙ୍କ ଦର୍ଶନ ଦେବାକୁ କୁଣ୍ଠିତ ହୁଅ ଯେ, ଏ କଣ ପ୍ରତିଶୋଧନା କଅଣ ?

ଶ୍ରୀକୃଷ୍ଣ—ବୃନ୍ଦେ ! ବୁଝି ପାରୁନାହିଁ କି ? ଏ ମୋର ସ୍ୱଭାବ, ମୋ ଭକ୍ତବତ୍ସଳ ନାମର ଏ ଲକ୍ଷଣ । ମୋତେ ଯେ ଯେପରି ଆକୁଳରେ ଡ଼ାକେ ମୁଁ ତାକୁ ସେହିପରି ପୁଣି ଆକୁଳିତ ଭାବ ଦର୍ଶାଇ ଡ଼ାକେ, ଏଥିରୁ ଭକ୍ତମାନଙ୍କ ମନ ପରୀକ୍ଷା କରୁଥାଏ ବହୁ ଦୁଃଖ ସହ୍ୟକରି ଯଦି ମୋଠାରେ ସେହିପରି ମନ ପ୍ରାଣ ସମର୍ପି ଥାଏ, ଶେଷରେ ମୁଁ ତାହାର ସମସ୍ତ ଦୁଃଖ ତାପ ଦୂର କରି ପ୍ରେମାଲିଙ୍ଗନ ଦ୍ୱାରା କୋଳେଇ ନିଏ । ରାଧା ଯେ ମୋର ସବୁ ଭକ୍ତଙ୍କର ପରେ ବଡ଼, ମୁଁ ଯଦି ଭକ୍ତାଧୀନ ତେବେ ରାଧାର ମୁଁ କି ଭଳି ଅଧୀନ ତାହା ବିବେଚନା କରି ଦେଖିତ ଭଲା ?

ବୃନ୍ଦା—ବୁଝିଲି ବୁଝିଲି, ତୁମ୍ଭ କହିବା ମର୍ମ ସବୁ ବୁଝିଲି । ସେ ଯାହା ହେଉ ଶ୍ୟାମ, ଏବେ ମୋ ଅନୁରୋଧଟା ରକ୍ଷା ହେବ କି ନାହିଁ କହିଲ ଦେଖି ?

ଏ ବ୍ରଜରେ ଅଷ୍ଟ ବନ୍ଧୁ, ଥିବା ଜନଙ୍କର ସନ୍ଧ ।
ଜନ୍ମାନ୍ତର ପୁଣ୍ୟଫଳ ଘଟିଛି ଅଜସ୍ର । ୫ ।

( ୰ଗୋପାଳ କୃଷ୍ଣ )

( ସଖିଗଣ ରାଧେ ଗୋବିନ୍ଦ ଜୟ ଶ୍ରୀ ରାଧେ ଗୋବିନ୍ଦ ଜୟ ବୋଲି ଗାନ କଲେ ଓ ପ୍ରେମଭରେ ନୃତ୍ୟ କରିବା ସମୟେ )

ପରଦା ପତନ ।

ଇତି ଶ୍ରୀ ମିଳନମାଧୁରୀ ଅଭିନୟ ସମ୍ପୂର୍ଣ୍ଣ ।



Printed by Nityananda Sahoo A- Press Cuttack

# ବିଜ୍ଞାପନ ।

ବାବାଜି ବୈଷ୍ଣବଚରଣ ଦାସଙ୍କ କୃତ ନାଟକାବଳି ଯାହାକି ମୋହନ ଗୋସ୍ୱାମୀ ଅଭିନୟ କରି ସର୍ବସାଧାରଣଙ୍କୁ ଦେଖାଉଛନ୍ତି ଓ ଦେଖାଇ-ଛନ୍ତି ସେ ସମସ୍ତ ନାଟକ ପ୍ରକାଶିତ ହୋଇଅଛି । କଟକ ବାଲୁବଜାର ଦାଶରଥି ପୁସ୍ତକାଳୟରେ ତଲ୍ଲ କଲେ ପାଇ ପାରିବେ ।

| | |
|---|---|
| ଶ୍ରୀକୃଷ୍ଣଙ୍କର ଜନ୍ମଲୀଳା ନାଟକ | |
| ,, ପ୍ରଥମ | ଟ ୦ ।/ |
| ,, ଦ୍ୱିତୀୟ | ଟ ୦ ।/ |
| ,, ବାଲ୍ୟଲୀଳା ୧ମ | ଟ ୦ । |
| ,, ,, ୨ୟ | ଟ ୦ । |
| ,, ପୌଗଣ୍ଡଲୀଳା ନାଟକ | ଟ ୦ ।୵ |
| ବସନ୍ତ ଉତ୍ସବ ନାଟକ | ଟ ୦ ୶ |
| ବରହମାନ ନାଟକ | ଟ ୦ । |
| ଦୁର୍ଜ୍ଜୟମାନ ନାଟକ | ଟ ୦ । |
| ମାନଭଞ୍ଜନ ନାଟକ | ଟ ୦ । |
| ଶାରଦୀୟ ରାସଲୀଳା ନାଟକ | ଟ ୦ । |
| ଦୋଳଲୀଳା ନାଟକ | ଟ ୦ ୶ |
| କାଳୀୟଦମନ ନାଟକ | ଟ ୦ /୵ |
| କୃଷ୍ଣକାଳି ନାଟକ | ଟ ୦ ୵ |
| ବସନ୍ତଲୀଳା ନାଟକ | ଟ ୦ । |
| ଗୀତଗୋବିନ୍ଦ ନାଟକ | ଟ ୦ ।/ |
| କଳଙ୍କଭଞ୍ଜନ ନାଟକ | ଟ ୦ । |
| ରାଇରାଜା ନାଟକ | ଟ ୦ । |
| ଗୋବର୍ଦ୍ଧନ ଲୀଳା ନାଟକ | ଟ ୦ ୶ |
| କଶୋଷଚନ୍ଦ୍ର ନାଟକ | ଟ ୦ ୵ |
| ନିକୁଞ୍ଜମିଳନ ନାଟକ | ଟ ୦ ୶ |
| ଉଦଗ୍‌ଧବିଳାସ ନାଟକ | ଟ ୦ । |
| ସଖୀସଙ୍ଖ୍ୟା ନାଟକ | ଟ ୦ ୵ |
| ବସ୍ତ୍ରହରଣ ନାଟକ | ଟ ୦ । |
| ମିଳନମାଧୁରୀ ନାଟକ | ଟ ୦ ୵ |
| ଶ୍ରୀରାଧାପ୍ରେମଲୀଳାନାଟକ | ଟ ୦ । |
| ଗୋଷ୍ଠବିହାର ନାଟକ | ଟ ୦ ୶ |
| ବୃନ୍ଦାବନୀ କୀର୍ତ୍ତନ ୧ମ | ଟ ୦ ୶ |
| ,, ୨ୟ | ଟ ୦ ୶ |
| ,, ୩ୟ | ଟ ୦ ୵ |
| ,, ୪ର୍ଥ | ଟ ୦ ୵ |
| ସଙ୍ଗୀତ ମୋହନବଂଶୀ ୧ମ | ଟ ୦ ୵ |
| ,, ,, ୨ୟ | ଟ ୦ ୵ |
| ,, ,, ୩ୟ | ଟ ୦ ୵ |
| ,, ,, ୪ର୍ଥ | ଟ ୦ ୵ |
| ସଙ୍ଗୀତ ସୁଧା (ଦାସ) | ଟ ୦ । |

ଦାଶରଥି ପୁସ୍ତକାଳୟ, ବାଲୁବଜାର,
ପୋଃ ଅଃ ଚାନ୍ଦନୀଚୌକ କଟକ ।